


# ଓଡ଼ିଆ-ଭୂମିଜ

## ଶବ୍ଦକୋଷ




ଜନଜାତି • ସଂସ୍କୃତି • ପ୍ରଗତି

**ସ୍ୱତନ୍ତ୍ର ଉନ୍ନୟନ ପରିଷଦ, ମୟୁରଭଞ୍ଜ**

**ଯୋଜନା ଓ ସଂଯୋଜନ ବିଭାଗ**

**ଓଡ଼ିଶା ସରକାର**

# ଓଡ଼ିଆ-ଭୁମିଜ ଶବ୍ଦକୋଷ


**ସଂକଳନ :**

ଶ୍ରୀ ମହେନ୍ଦ୍ର ନାଥ ସର୍ଦ୍ଦାର

ଶ୍ରୀମତୀ ଲଳିତା ସର୍ଦ୍ଦାର

ଶ୍ରୀ ବୁଦ୍ଧେଶ୍ୱର ମୁଣ୍ଡା

ଶ୍ରୀ ଗୁଲାପ ସିଂ ସର୍ଦ୍ଦାର









**ସ୍ୱତନ୍ତ୍ର ଉନ୍ନୟନ ପରିଷଦ, ମୟୂରଭଂଜ**

**ଯୋଜନା ଓ ସଂଯୋଜନ ବିଭାଗ**

**ଓଡ଼ିଶା ସରକାର**

# ଓଡିଆ- ଭୂମିଜ ଶବ୍ଦକୋଷ

**ସଂକଳନ** : ଶ୍ରୀ ମହେନ୍ଦ୍ର ନାଥ ସର୍ଦ୍ଦାର
ଶ୍ରୀମତୀ ଲଳିତା ସର୍ଦ୍ଦାର
ଶ୍ରୀ ବୁଦ୍ଧେଶ୍ୱର ମୁଣ୍ଡା
ଶ୍ରୀ ଗୁଲାପ ସିଂ ସର୍ଦ୍ଦାର

**ପ୍ରକାଶକ** : ସ୍ୱତନ୍ତ୍ର ଉନ୍ନୟନ ପରିଷଦ, ମୟୂରଭଂଜ
ଯୋଜନା ଓ ସଂଯୋଜନ ବିଭାଗ,
ଓଡ଼ିଶା ସରକାର

**ପ୍ରଥମ ପ୍ରକାଶ** : ନଭେମ୍ବର, ୨୦୧୮

**ମୁଦ୍ରଣ** : ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର

**ODIA-BHUMIJA SABDAKOSH**

**Compilation** : Sri Mahendra Nath Sardar
Smt. Lalita Sardar
Sri Bhudhheswar Munda
Sri Gulap Sing Sardar

**Publisher** : Special Development Council, Mayurbhanj,
Planning & Convergence Department,
Govt. of Odisha

**First Edition** : November, 2018

**Printed at** : Odisha State Bureau of Textbook Preparation and Production, Bhubaneswar

# ମୁଖବନ୍ଧ

ଓଡ଼ିଶାରେ ବସବାସ କରୁଥିବା ଜନଜାତି ମାନଙ୍କର ସଂସ୍କୃତି ଖୁବ୍ ପ୍ରାଚୀନ । ସେମାନଙ୍କ ଦୈନନ୍ଦିନ ଜୀବନଚର୍ଯ୍ୟା, ପୂଜା ପାର୍ବଣ, ଭାଷା, ଲୋକ ପରଂପରା ଅନ୍ୟମାନଙ୍କ ଠାରୁ ଖୁବ୍ ନିଆରା । ନିଜ ପରିବେଶ ଆଧାରିତ ଭାଷା-ସଂସ୍କୃତି-କଳା- ପାରଂପରିକ ଜ୍ଞାନ କୌଶଳ ସେମାନଙ୍କ ଜୀବନ ସହ ପ୍ରବାହମାନ । ମୁଖ୍ୟ ସ୍ରୋତ ଠାରୁ ଦୂରରେ ରହି ମଧ୍ୟ ଏମାନଙ୍କ ସଂଗ୍ରାମ ଓ ସ୍ୱାଭିମାନ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ବାହ୍ୟ ସଂସ୍କୃତିର ପ୍ରଭାବ ଓ ବୈଦ୍ୟୁତିକ ଯୋଗାଯୋଗ ବ୍ୟବସ୍ଥା କ୍ଷୀପ୍ରତର ହେବା ଦ୍ୱାରା ସଂପ୍ରତି ତାଙ୍କର ଭାଷା- ସଂସ୍କୃତିରେ ପରିବର୍ତ୍ତନ ପରିଲକ୍ଷିତ ହେବାରେ ଲାଗିଛି । ଏହି ପରିବର୍ତ୍ତନରେ ତାଙ୍କ ପାରମ୍ପରିକ ସାମାଜିକ- ସାଂସ୍କୃତିକ ବ୍ୟବସ୍ଥା ଏକ ଘଡିସନ୍ଧି ମୁହୂର୍ତ୍ତ ଦେଇ ଗତି କରୁଛି । ଜନଜାତି ସମାଜ ନିଜ ସଂସ୍କୃତି ପରିସରରୁ ବାହାରି ମୁଖ୍ୟ ସ୍ରୋତ ସହ ସାମିଲ ହେବା ପ୍ରକ୍ରିୟାରେ ଭାଷା ହେଉଛି ଏକ ପ୍ରମୁଖ ମାଧ୍ୟମ । ଭାଷା ହେଉଛି ପରମ୍ପରା ଓ ପ୍ରଗତିର ଏକ ସଂଯୋଜକ ସେତୁ ବିକାଶକୁ ଯୋଡ଼ିବାର ମୁଖ୍ୟ ମାର୍ଗ । ନିଜ ଭାଷା ମାଧ୍ୟମରେ ବିକାଶର ଭାଷାକୁ ବୁଝି ପାରିଲେ ଜନଜାତିଙ୍କ ଉନ୍ନୟନର ମାର୍ଗ ପ୍ରଶସ୍ତ ହୋଇ ପାରିବ ।

ଉନ୍ନୟନ ବ୍ୟବସ୍ଥାର ଅନ୍ୟତମ ମୁଖ୍ୟ ଅଂଗ ହେଲା ଶିକ୍ଷା । ଶିକ୍ଷା ବ୍ୟବସ୍ଥାର ଆଦ୍ୟ ସୋପାନରେ ଶିଶୁ ସହ ପରିଚିତ ହେବା ଅର୍ଥ ତା ଭାଷା ସହ ପରିଚିତ ହେବା । ଶିଶୁ ତା ଆଦ୍ୟ ବୟସରେ ମା'ର ଭାଷା ସହ ପରିଚିତ ହୋଇଥାଏ । ତେଣୁ ଶିଶୁର ମାତୃଭାଷା ସହ ନିଜକୁ ସାମିଲ କରାଇ ତାକୁ ଶିକ୍ଷା ବ୍ୟବସ୍ଥା ସହ ଯୋଡିବାର ଆବଶ୍ୟକତା ରହିଥାଏ । ଶିଶୁ ତା' ଭାଷାରେ ତା ଜଗତକୁ, ପ୍ରକାରାନ୍ତରେ ତା ସଂସ୍କୃତି ସହ ପରିଚିତ ହୋଇଥାଏ । ଏଣୁ ଶିଶୁକୁ ଶିକ୍ଷାଦାନ କରିବା ମାଧ୍ୟମରେ ଶିକ୍ଷାର ମାର୍ଗ ପ୍ରଶସ୍ତ କରିବା ଅର୍ଥ ଜନଜାତି ଭାଷା ଓ ସଂସ୍କୃତିକୁ ଜାଣିବା ।

ପ୍ରାଥମିକ ଶିକ୍ଷା ବ୍ୟବସ୍ଥାରେ ଭାଷାର ଆବଶ୍ୟକତାକୁ ଆଖି ଆଗରେ ରଖି ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଜନଜାତି ଅଂଚଳର ପ୍ରମୁଖ ୨୧ଗୋଟି ଭାଷା ଉପରେ ଦ୍ୱିଭାଷୀ ଶବ୍ଦକୋଷ ପ୍ରଣୟନ କରିଛି । ଏହା ଏକ ପ୍ରାରମ୍ଭିକ ଉପକ୍ରମ । ଜନଜାତି ଭାଷା ଗୁଡ଼ିକର ଏକ ପୂର୍ଣ୍ଣାଙ୍ଗ ଶବ୍ଦକୋଷ ପ୍ରଣୟନର ଆବଶ୍ୟକତା ରହିଛି । ଏହା କଲେ ଜନଜାତି ସଂସ୍କୃତିର ସଂରକ୍ଷଣ ସମ୍ଭବ ହୋଇପାରିବ ।

ଜନଜାତି ଭାଷା ଗୁଡ଼ିକର ଆଂଚଳିକ ଭେଦ ରହିଛି । କେଉଁଠି ବଂଶ ଆଧାରରେ ତ କେଉଁଠି ଭୌଗୋଳିକ ଆଧାରରେ ଏହି ଭେଦ ଜଣାପଡ଼େ ।ଏହା ମୁଖ୍ୟତଃ ସ୍ୱନିମିକ । ତେବେ ବସ୍ତୁ ସଂସ୍କୃତିରେ କିଛି ଆଗତ ଶବ୍ଦ ମଧ୍ୟ ଭାଷାକୁ ସଂକ୍ରମିତ କରିଥିବାରୁ ପାର୍ଥକ୍ୟ ରହିବା ସ୍ୱାଭାବିକ । ପ୍ରସଂଗକୁ ଜାଣିଲେ ଶବ୍ଦର ଅର୍ଥ ପାଇବାରେ କୌଣସି ଅସୁବିଧା ନ ଥାଏ ।ତେବେ ବିଭିନ୍ନ ଅଂଚଳର ଭାଷାକୁ ସ୍ଥାନୀତ କରିବା ସୀମିତ ସମୟ ମଧ୍ୟରେ ସମ୍ଭବପର ହେଉ ନଥିବାରୁ ସଂକଳିତ ଶବ୍ଦକୋଷ ମୟୂରଭଂଜ ଜିଲ୍ଲାର ଗୋରିମହିଷାଣି ଅଂଚଳର ଭାଷାକୁ ଆଧାର କରି ପ୍ରସ୍ତୁତ କରାଯାଇଛି ।

ଆମେ ଆଶା କରୁଛୁ ପ୍ରସ୍ତୁତ **ଓଡ଼ିଆ - ଭୂମିଜ ଶବ୍ଦକୋଷ**କୁ ପାଠକେ ଉଦାରତାର ସହ ଗ୍ରହଣ କରିବେ ଏବଂ ଉଦ୍ଦେଶ୍ୟ ସାଧନ ଦିଗରେ ଆମକୁ ସହଯୋଗ କରିବେ ବୋଲି ଆଶା ଓ ବିଶ୍ୱାସ ।

ଡା. ଦେବାଶିଷ ମାର୍ଣ୍ଡି

ଅଧ୍ୟକ୍ଷ

ସ୍ୱତନ୍ତ୍ର ଉନ୍ନୟନ ପରିଷଦ

ମୟୂରଭଂଜ

# ଅ

| | | |
|---|---|---|
| ଅଲ୍ | – | ଲେଖା |
| ଅନଲ୍ | – | ଝୋଟି |
| ଅଲ୍ଅନଲ୍ | – | ଭୂମିଜଲିପି, ଭୂମିଜବର୍ଣ୍ଣମାଳା |
| ଅତେ | – | ଭୂଇଁ |
| ଅମନ୍ | – | ଗଜା ବାହାରିବା |
| ଅବର୍ | – | ଆଣ୍ଠୁ ମାଡ଼ି ବସିବା |
| ଅଜଃ | – | ମାଖିବା |
| ଅରଂ | – | ବଜାଇବା(ମୁଖ ଦ୍ୱାରା) |
| ଅକତେ | – | କୁଆଡେ, କେଉଁଠିକୁ |
| ଅକତଦ୍ | – | କେଉଁଟା |
| ଅକସାଃ | – | କୁଆଡକୁ, କେଉଁଠିକୁ |
| ଅକରେ | – | କେଉଁଠାରେ |
| ଅଟାଂ | – | ଉଡିଯିବା |
| ଅପର୍ | – | ଟଣାଟଣି |
| ଅଞ୍ଜ୍ରା | – | ଅପରିଷ୍କାର |
| ଅକଏ | – | କିଏ |
| ଅମ୍ | – | ଦେବା |
| ଅଗମ୍ | – | ଗଭୀରତମ |
| ଅପମ୍ | – | ପରସ୍ପରକୁ ଦେବା |
| ଅଃ | – | ବାନ୍ତି ଲାଗିବା, ଉଳା |
| ଅଝା | – | ଗୁଣିଆ |
| ଅତା | – | ଜାକିବା |
| ଅୱାର | – | ଛାଣିବା |
| ଅଲଃ | – | ଲେଖିବା |
| ଅକଲେକା | – | କିପରି |
| ଅଟାଃ | – | ଢାଙ୍କୁଣି ଖୋଲିବା |
| ସୁବାଇଦି | – | ପାଖକୁ ନେବା |
| ଅଲେଦ୍ | – | ବାହାରିବା |

| | | |
|---|---|---|
| ଅପେଲ୍ | - | ସୃଷ୍ଟି |
| ଅପରିଷ୍କାର | - | ଅପରିଷ୍କାର ଜାଗାରେ ମାଛି ବସନ୍ତି |
| ଆମ୍ | – | ତୁମେ |
| ଅକୟ୍ | – | କିଏ |
| ଅମ୍ | – | ଦେବା |
| ଅଗମ୍ | – | ଅଗମ ଦରେୟାରେ ଜାହାଜ ସେନତାନା |
| ଗଭୀର | – | ଗଭୀର ସମୁଦ୍ରରେ ଜାହାଜ ଯାଉଛି |
| ଅପମ୍ | – | ବାହାହିସିରକିନ ଅପମ୍ ଜାନା |
| ପରସ୍ପରକୁ ଦେବା | – | ପରସ୍ପରକୁ ଫୁଲମାଳ ଅର୍ପଣ କଲେ |
| ଅଝା | – | ଅଝା ରାଗିଜ୍ ପେ |
| ଗୁଣିଆ | - | ଗୁଣିଆକୁ ଡାକ |
| ଅତା | – | ବିଲାଇ ଯିଜ୍ କାଟୟାକେଜ୍ ଅତା କିଜିଜ୍ଆ |
| ଜାକିବା | - | ବିଲେଇଟା ମୂଷାକୁ ଜାକି ପକାଇଲା |
| ଅଓ୍ୱାର | – | ଦୁଃଖଆକାନ୍ ହଳକ ଅଓ୍ୱାର କମ୍ । |
| ଉଦ୍ଧାର କରିବା | - | ଦୁଖୀ ଦରିଦ୍ରକୁ ଉଦ୍ଧାର କର । |
| ଅଲଃ | - | ଅଲଃ ପଳାଓ୍ୱ ଯାନରେ ବୁଦ୍ଧି ଚେଦଃଆ । |
| ଲେଖିବା ପଢିବା | - | ପଢିଲେ ଲେଖିଲେ ବୁଦ୍ଧି ଆସେ । |
| ଅକଲେକା | – | ଅକଲେକାମ୍ କାଜିତାଃ ଆ |
| କେମିତି | - | କେମିତି କହୁଛ । |
| ଅଲେଦ୍ | - | ଗାପା ଚିମ୍ତାଃ ବାଳା ବୁନ୍ ଆଲେଦ ତାନା । |
| ବାହାରିବା | - | କାଲି କେତେବେଳେ ବାହାରିବା । |

# ଆ

| | | |
|---|---|---|
| ଆଦିମ୍ | - | ଆଦିମ୍ ଯୁଗରେନ୍ ହଳକ ସେନ୍ଦ୍ରା କେନ । |
| ପୂର୍ବ | - | ପୂର୍ବ କାଳର ଲୋକମାନେ ଶିକାର କରୁଥିଲେ । |
| ଆଃ | – | ଆଃ ସାରଦ ଆବୁଆଃ । |
| ଧନୁ | - | ଧନୁ ଶର ଆମରି । |
| ଆମ୍ | – | ଆମ୍ ଆକାମ୍ ସେନତାନା ? |
| ତୁମେ | - | ତୁମେ କୁଆଡେ ଯାଉଛ ? |

| | | |
|---|---|---|
| ଆଜ୍ | – | ଆଜ୍ ଦ ପୋଲିସ କାନାଜ୍ |
| ସିଏ | - | ସିଏ ପୋଲିସ ଅଟନ୍ତି । |
| ଆବେନ୍ | - | ଆବେନ୍ ହିଜୁଃ ବେନ୍ |
| ଆପଣ | - | ଆପଣ ଆସନ୍ତୁ । |
| ଆଦେର | – | ବାକ୍ସା ତେଦ୍ ଅଳାଃ ଆଦେର୍ ତାମ୍ |
| ଭିତରେ ପୁରାଇବା | - | ବାକ୍ସଟିକୁ ଘରେ ପୁରାଇ ଦିଅ । |
| ଆଦେଜ୍ | - | ଆଦେଜ୍ ହଳ ହାଟ୍‌କ ସେନ୍‌ଜାନା |
| କେତେକ | - | କେତେକ ଲୋକ ହାଟକୁ ଗଲେ । |
| ଆଣେଜ୍ | – | ମାଡି ଆଣେଜ୍ ତାମ୍ |
| ଘୋଡେଇବା | - | ଭାତ ଘୋଡେଇ ଦିଅ |
| ଆଦ୍ | – | ଇଞ୍ଜା ହାଲିୟା ଜିଜ୍ ଆଦ୍ ଜାନାଜ୍ |
| ହଜିବା | - | ମୋ ବଳଦଟି ହଜିଗଲା । |
| ଆଦ୍ୱା | - | ଆଦ୍ୱା ଚାଉଲି କିରିଞ୍ଜ ଆଗୁଜ୍‌ଏ |
| ଅରୁଆ | - | ଅରୁଆ ଚାଉଳ କିଣି ଆଣ । |
| ଆଟ୍‌କିର୍ | - | କୁମ୍ବୁଲୁକ ମେରମ୍ ଜିଜ୍‌କେ ଅଟ୍‌କିର୍ କିଜିଃଆ । |
| ନେଇପଳାଇବା | - | ଚୋରମାନେ ଛେଳିଟିକୁ ନେଇ ପଳାଇଲେ । |
| ଆକ୍ରିଂ | – | କାସି ଜିଜ୍ ଆକ୍ରିଂ ତାଜଏ । |
| ବିକ୍ରି | - | ଖାସିଟିକୁ ବିକ୍ରି କରିଦିଅ । |
| ଆଞ୍ଜଲି | – | ମଦ୍ ଆଞ୍ଜଲି ଚାଉଲି ଆମେମେ । |
| ଅଞ୍ଜଲି | - | ଆଞ୍ଜୁଳାଏ ଚାଉଳ ଦିଅ । |
| ଆତା | – | ଆଲେ ଅଳାଃରେ ବୁଜାଲେ ଆତାଜ୍‌ଆ । |
| ଭାଜିବା | - | ଆମ ଘରେ ମୁଢି ଭଜା ହୁଏ । |
| ଆତାର୍ | – | ଅଳାଃ ଆତାର ଜାନା । |
| ପୋଡିବା | - | ଘରଟି ପୋଡି ଗଲା |
| ଆଁଶ୍ | - | ଆବେନ ଟାୟରେ ବିଜାଞ୍ଜ ଆଁଶ ମେନାଃଆ । |
| ଆଶା | - | ଆପଣଙ୍କ ନିକଟରେ ମୋର ବହୁତ ଆଶା ଅଛି । |
| ଆପେ | - | ଆପେ ଅକାପେ ସେନ୍‌ତାନା । |
| ତୁମେ ମାନେ | - | ତୁମେ ମାନେ କୁଆଡେ ଯାଉଛ । |

| | | |
|---|---|---|
| ଆପେଜ୍ | - | ଇଞ୍ଜକେ ଆପେଜ ଟାକା ଆମାଞ୍ଜ୍ ମେ । |
| ତିନି | - | ମୋତେ ତିନି ଟଙ୍କା ଦିଅ । |
| ଆରାଣ୍ | - | ଆରାଣ ଆଉକାତେ ହାଲିୟା କିନ୍ ଜଲା କିନ୍ନେ । |
| ଜୁଆଳି | - | ଜୁଆଳି ଆଣି ବଳଦକୁ ଯୋଚି ଦିଅ । |
| ଆଡିଞ୍ଜ୍ | - | ଉରିଜ୍ କ୍ ଆଡିଞ୍ଜ୍ ଡାନା । |
| ଚରିବା | - | ଗୋରୁ ଗୁଡିକ ଚରୁଛନ୍ତି । |
| ଆବୁ | - | ଆବୁ ଜତହଳ ଅଲଃ ବାଖୁଲ ବୁ ସେନଃଆ । |
| ଆମ୍ଭେମାନେ | - | ଆମ୍ଭେମାନେ ସମସ୍ତେ ସ୍କୁଲକୁ ଯିବା । |
| ଆଚାକା | - | ଆଚାକା ଗାମା ହିଜ୍ଜାନା । |
| ହଠାତ୍ | - | ହଠାତ୍ ବର୍ଷା ଆସିଲା । |
| ଆଜମ୍ | - | ମାଞ୍ଜି ହନେ ଜିଜ୍କେ ମାଡିଜ୍ ଆଜମ୍ ତାଜିଆ । |
| ଖୁଆଇବା | - | ମା ଛୁଆକୁ ଭାତ ଖୁଆଉଛି । |
| ଆତମ୍ | - | ପାପୀ ହଳ ଟାୟାତେ ଆତମ୍ ଏନ୍ନେ। |
| ଦୁରେଇଯିବା | - | ଦୁଷ୍ଟ ଲୋକ ଠାରୁ ଦୁରେଇ ରୁହ । |
| ଆରିଲ୍ | - | ତିସିଞ୍ଜ ଗାମା ଲୋଃ ଆରିଲ ହଁଜ୍ ଉୟୁଃକେଆ । |
| କୁଆପଥର | - | ଆଜି ବର୍ଷା ସହିତ କୁଆପଥର ପଡିଲା । |
| ଆରିଦ୍ | - | ଆରିଦ୍ ଆକାଆମ୍ଚି ଜାପିଦ୍ ଆକାଆମ୍ । |
| ଚାହିଁବା | - | ଚାହିଁଛ ନା ଆଖି ବୁଜିଛ । |
| ଆପିର | - | ଚେଣେ ଜିଜ୍ଏଜ୍ ଆପିର ଜାନା । |
| ଉଡିବା | - | ଚଢେଇଟି ଉଡିଗଲା । |
| ଆବ୍ | - | ଦାରୁ ଡାଲରେ ଚେଣେ ଜିଜ୍ଏଜ୍ ଆବ୍ ଆକାନା । |
| ବସିବା | - | ଗଛ ଡାଳରେ ଚଢେଇଟି ବସିଛି । |
| ଆୟାର | - | ଡାୟମ ହଳକ ଆୟାର ଜାନା । |
| ଆଗେଇବା | - | ପଛ ଲୋକ ଆଗେଇ ଗଲେ । |
| ଆକାଲ | - | ନେକାଲମ୍ ହଁଜ୍ ଆକାଲ୍ କେଆଃ । |
| ମରୁଡି | - | ଏ ବର୍ଷ ମରୁଡି ହେଲା । |
| ଆଣାଦି | - | ଆଣାଦି ଦ ମୁଜାଦ୍ ସୁଗୁମ୍ ପାଇଟି କାନା । |
| ବିବାହ | - | ବିବାହ ଏକ ମାଙ୍ଗଳିକ କାର୍ଯ୍ୟ ଅଟେ । |
| ଆଲାଂ | - | ଆଲାଂ ବାର ହଳ ଅଲଃ ଆଲାଂ । |

| | | |
|---|---|---|
| ଦୁଇଜଣ | – | ଆମେ ଦୁଇଜଣ ପାଠ ପଢ଼ିବା । |
| ଆଲାଂ | – | ଆଲାଂତେ ସିବିଲ ଏତହଃଆ । |
| ଜିଭ | – | ଜିଭରେ ସ୍ୱାଦ ବାରି ହୁଏ । |
| ଆସେନ | – | ହନେଜିଜ୍ କେ ଗଟାଜ୍ ଆସେନ୍ କିଜିଜ୍ଆ । |
| ବୁଲେଇବା | – | ଛୁଆଟିକୁ ଚାରିଆଡେ ବୁଲେଇଲେ । |
| ଆଶ୍ରା | – | ଆଶ୍ରା ଲାଗେଦ ଅଳାଃ କ ବାଇ କେଆଃ । |
| ଆଶ୍ରୟ | – | ଆଶ୍ରୟ ପାଇଁ ଘରଟିଏ ତିଆରି କଲେ । |
| ଆକାୟ ସାତିଞ୍ଜି | – | ହାସୁ ହଳଜିଜ୍କ ଆକାୟ ସାତିଞ୍ଜି କିଜିଜ୍ଆ । |
| ହରକତ୍ | – | ରୋଗିଟିକୁ ହଇରାଣ ହରକତ୍ କରିଦେଲେ । |
| ଆମାବାସିୟା | – | ତିସିଞ୍ଜି ଆମାବାସିୟା ନିଦା । |
| ଅମାବାସ୍ୟା | – | ଆଜି ଅମାବାସ୍ୟା ରାତି । |

## ଇ

| | | |
|---|---|---|
| ଇପିଲ | – | ସିର୍ମାରେ ଇପିଲ କ ନେଲଃ ତାନା । |
| ତାରା | – | ଆକାଶରେ ତାରା ଦେଖାଯାଉଛନ୍ତି । |
| ଇସିନ | – | କାଦାଲ୍ ଇସିନ୍ ସାସାଂଗେ ନେଲଃଆ । |
| ପାଚିଲା | – | ପାଚିଲା କଦଳୀ ହଳଦିଆ ଦେଖାଯାଏ । |
| ଇମିନ | – | ଇଞ୍ଜଃା ମାମୁଁ ଅଳାଃ ଇମିନ୍ ସାଙ୍ଗିଞ୍ଜା । |
| ବହୁତ | – | ମୋ ମାମୁଁ ଘର ବହୁତ ଦୂର । |
| ଇଞ୍ଜଃା | – | ଇଞ୍ଜଃା ଗାଡି ମେନାଃଆ । |
| ମୋର | – | ମୋର ଗାଡ଼ି ଅଛି । |
| ଇନିଜ୍ | – | ଇନିଜ ଦ ଅକୟ କାନାଜ୍ |
| ସିଏ | – | ସିଏ କିଏ ? |
| ଇଦି | – | ଇଦି କେଆଜ୍ । |
| ନେବା | – | ନେଇଗଲା |
| ଇଡିଲ | – | କାସେ ଜିଜ୍ଏଜ୍ ଇଡିଲାକାନା । |
| ଚର୍ବି | – | ଖାସିଟି ର ଚର୍ବି ହୋଇଛି । |
| ଇବିଲ | – | ଇମିନ ଇବିଲ ବାହା ଉୟୁଃ ଆକାନା । |
| ବହଳ | – | ବହୁତ ବହଳିଆ ଫୁଲ ପଡିଛି । |

| | | |
|---|---|---|
| ଇଚାଃ | – | ହନେ ଜିନ୍‌କେ ଇଚାଃ କିଜିଜ୍‌ଆ । |
| ଚିମୁଟିବା | - | ଛୁଆଟିକୁ ଚିମୁଟି ଦେଲା । |
| ଇଞ୍ଜ | - | ଇଞ୍ଜ ଦ କାଞ୍ଜ ସେନଃଆ । |
| ମୁଁ | - | ମୁଁ ଯିବି ନାହିଁ । |
| ଇକିର | – | ପୁଖୁରୀ ଦାଃ ବିଜାଞ୍ଜ ଇକିର ଗେୟା । |
| ଗଭୀର | - | ପୋଖରୀ ପାଣି ବହୁତ ଗଭୀର । |
| ଇଦିଜ୍‌ମେ | – | ଉଲି ଇଦିଜ୍‌ମେ । |
| ନେଇଯାଅ | - | ଆମ୍ବ ନେଇଯାଅ । |
| ଇର୍ | – | ବାବା କ ଇର୍‌ତାନା । |
| କାଟିବା | - | ଧାନ କାଟୁଛନ୍ତି । |
| ଇନା | – | ଇନା ଦ କାଞ୍ଜ ଅମ୍ ଦାଲିୟା । |
| ତାହା | - | ତାହା ଦେଇ ପାରିବି ନାହିଁ । |
| ଇଡି | - | ଇଡି ତେଦ୍ ମଚକ୍ ଆକାନ । |
| ଗୋଇଠି | - | ଗୋଇଠି ମଚକି ଯାଇଛି । |
| ଇନିଦ | - | ଇନିଦ ଏନଟାୟରେ ମେନାଃଆ |
| ସେହି ଯେ | - | ସେଇ ଯେ ସେଇଠି ଅଛି । |
| ଇମାଃଗେ | – | ଇମାଃଗେ ଆମାଞ୍ଜ ମେ । |
| ସେତିକି | - | ସେତିକି ଦିଅ । |
| ଇଦିଞ୍ଜମେ | – | ଇଞ୍ଜକେ ଇଦିଞ୍ଜମେ । |
| ନେଇଯିବା | - | ମୋତେ ନେଇ ଯାଅ । |
| ଇଲ୍‌ଗୁ | – | ହନେ ଜିଜ୍ ସାରାଖନ୍ ଏଜ୍ ଇଲ୍‌ଗୁ ତାଜିଞ୍ଜ । |
| ଚିଡେଇବା | - | ଛୁଆଟି ସବୁବେଳେ ଚିଡଉଛି । |
| ଇଟ୍‌କା | – | ଇଟକା ବିଜାଞ୍ଜ ବାବାତାଃଆ । |
| ବାଇଡଙ୍କ | - | ବାଇଡଙ୍କ ବହୁତ କୁଣ୍ଡେଇ ହୁଏ । |
| ଇଲାଦ୍ | – | ଉଣ୍ଡୁ ଚାଟୁ ତେଦ୍ ଇଲାଦ୍ ତାମ୍ । |
| ତାଳିମାରିବା | - | କଣା ହାଣ୍ଡିଟାକୁ ତାଳି ମାରିଦିଅ । |

# ଉ

ଉବ୍ – ଜିଲିଞ୍ଜ ଉବ୍ ଚେହେଁରା ନେଲଃଆ ।

ବାଳ – ଲମ୍ବା ବାଳ ସୁନ୍ଦର ଦେଖାଯାଏ ।

ଉଦ୍ – ବିଞ୍ଜ ଜିଜ୍ ଚକେଜ୍ ଉଦ୍‌କେଜିଆ ।

ଗିଳିବା – ସାପଟି ବେଙ୍ଗକୁ ଗିଳିଦେଲା ।

ଉକ୍ – ଭୁମିଜ କଓ୍ୱାଃ ଉକ୍ ମେନାଃଆ ।

ଶାସନ – ଭୂମିଜ ମାନଙ୍କର ଶାସନ ଅଛି

ଉଦ୍ – ଗାମା କେଦ୍‌ରେ ଉଦ୍ ଅମନଃଆ ।

ଛତୁ – ବର୍ଷା ହେଲେ ଛତୁ ଫୁଟେ ।

ଉଟା – ସେତାଃ ଯାନା ଉଟାନ୍ ପେ ।

ଉଠିବା – ସକାଳ ହେଲା ଉଠି ପଡ ।

ଉମ୍ବୁଲ – ଦାରୁ ଉମ୍ବୁଲ୍‌ରେକ ଦୁବ୍ ଆକାନା ।

ଛାଇ – ଗଛ ଛାଇରେ ବସିଛନ୍ତି ।

ଉମ – ସେତାଃରେ ଉମ୍ ହିଜୁଃମେ ।

ଗାଧୋଇବା – ସକାଳେ ଗାଧୋଇ ଆସ ।

ଉଲି – ଦାରୁରେ ଉଲି ଇସିନାକାନା ।

ଆମ୍ବ – ଗଛରେ ଆମ୍ବ ପାଚିଛି ।

ଉକୁ – ଉକୁ ଉକୁ ବୁନ୍ ଉନୁଃଆ ।

ଲୁଚିବା – ଲୁଚକାଳି ଖେଳିବା ।

ଉକା – ଉକାରେଞ୍ଜ ଏଣେ ୟାକାନା ।

କହୁଣୀ – କହୁଣୀରେ ଘା ହୋଇଛି ।

ଉଦୁର – ଇଞ୍ଜକେ ଆଲମ ଉଦୁର ବାଳାଞ୍ଜା ।

ଠେଲିବା – ମୋତେ ଠେଲା ପେଲା କର ନାହିଁ ।

ଉରୁମ – ଆମକେ କାଞ୍ଜ ଉରୁମ ଦାଲିୟାମ୍ ତାନା ।

ଚିହ୍ନିବା – ତୁମକୁ ଚିହ୍ନି ପାରୁ ନାହିଁ ।

ଉଙ୍କୁଳ – ତିସିଞ୍ଜ କ ବଙ୍ଗା ଉଙ୍କୁଳ କେଆଃ ।

ଆରମ୍ଭ – ଆଜି ପୂଜା ଆରମ୍ଭ କଲେ ।

ଉଙ୍ଗୁଦ – କାମଣି କ ବିଲରେକ ଉଙ୍ଗୁଦ୍ ଆକାନା ।

ନଇବା – ମୁଲିଆଣିମାନେ ବିଲରେ ନଇଁଛନ୍ତି ।

ଉଜୁ – ଦେୟାରେ ଉଜୁ ଅଲେଦ ଆକାନ୍ ।

ବଥ – ପିଠିରେ ବଥ ବାହାରିଛି ।

ଉଟ୍‌କାଲ – ଦିରି ଉଟକାଲ କାତେ କାଟ୍ କମ୍ ବୁ ସାବ୍ କଓ୍ୱା ।

ଓଲଟାଇବା – ପଥର ଓଲଟାଇ କଙ୍କଡା ଧରିବା ।

ଉଲା – ପୁରାଃ ଜମ୍ କାତେ ଆଲମ୍ ଉଲାଜ୍ଆ ।

ବାନ୍ତି କରିବା – ଅଧିକା ଖାଇ ବାନ୍ତି କର ନାହିଁ ।

ଉସକାଉ – ଆଜ୍‌କେ ଆଲମ ଉସକାଉଇଜ୍ଆ ।

ଉସକାଇବା – ତାକୁ ଉସକାଅ ନାହିଁ ।

ଉନୁଃ – ହନକ କ ଚିଣ୍ଡୁକ ଉନୁଃ ତାନା ।

ଖେଳିବା – ପିଲାମାନେ ବଲ ଖେଳୁଛନ୍ତି ।

ଉମୁତାଃ – ଆମ୍ ମେମ ହିଜ୍ ଜାନ ଦ ଉମତାଃ ବାଲା ଉମ୍ ସାଃଏଞ୍ଜ ସେନଲେନା ।

ସେତିକି ବେଳେ – ତୁମେ ଯେତେବେଳେ ଆସିଲ ସେତିକି ବେଳେ ଗାଧୋଇ ଯାଇଥିଲି ।



ଏଲା – ଆମ ଏଲା ହିଜୁଃ ମେ ।

ଆସ – ତୁମେ ଆସ ।

ଏଲାଦା – ଏଲାଦା ହିଜୁଃବେନ ।

ଆସନ୍ତୁନା – ଆପଣ ଆସନ୍ତୁନା ।

ଏରା – ଏରା ଜିଜ୍ଏଜ୍ ହିଜତାନା ।

ସ୍ତ୍ରୀ – ସ୍ତ୍ରୀ ଲୋକଟି ଆସୁଛି ।

ଏରାକ – ଏରା କ କ ହିଜ୍ ତାନା ।

ସ୍ତ୍ରୀ ଲୋକମାନେ – ସ୍ତ୍ରୀ ଲୋକମାନେ ଆସୁଛନ୍ତି ।

ଏତ – ଏତ କେଆଃମ ତ ।

ଜାଣିବା – ଜାଣିଗଲ ତ ।

ଏତ ଆନାମ୍ – ଏତ ଆନାମ ଚି ?

ଜାଣିଛ କି – ଜାଣିଗଲ କି ?

ଏନ୍‌କା – ଠିକ୍ ଏନ୍‌କାଗେ ନେଲଃ ତାନା ।

ସେହିପରି – ଠିକ୍ ସେହିପରି ଦେଖାଯାଉଛି ।

| | | |
|---|---|---|
| ଏଟାଃ | – | ଏଟାଃ ଏଟାଃ ହାତୁରେନ୍ କ ମେନାଃ କଆ । |
| ଅଲଗା | - | ଅଲଗା ଅଲଗା ଗାଁର ଅଛନ୍ତି । |
| ଏଟାଃ | - | ଏଟାଃ ଲେକାନ ହଳକ ମେନାଃ କଓ୍ୱା । |
| ଅନ୍ୟ | - | ଅନ୍ୟପ୍ରକାର ଲୋକ ଅଛନ୍ତି । |
| ଏଟାଃ | – | ଏଟାଃ ଏଟାଃ ଜାଏଗାରେନକ ହିଜ୍‌ଲେନା । |
| ଭିନ୍ନ | - | ବିଭିନ୍ନ ଅଞ୍ଚଳରୁ ଆସିଥିଲେ । |
| ଏସେଲ୍ | – | କୁଳିହନେ ଜିଜ୍ ନେଲଜମ୍ ଦ ଏସେଲ୍ ଗେୟା |
| ଗୋରା | – | ଝିଅଟି ଦେଖିବାକୁ ଗୋରା । |
| ଏଦେଲେ | – | ଏଦେଲ ବାହା ରାଙ୍ଗା ଗେୟା । |
| ଶିମିଳି | - | ଶିମିଳି ଫୁଲ ନାଲି । |
| ଏନ୍‌ରେ | – | ଏନ୍ରେ ମେନାଃଆ |
| ସେହିଠାରେ | - | ସେହିଠାରେ ଅଛି । |
| ଏକ୍‌ଲା | – | ଏକଲା ଗେ ମ୍‌ହିଜ୍‌ଜାନା |
| ଏକାକୀ | – | ଏକୁଟିଆ ଆସିଗଲ। |
| ଏତଆନାଞ୍ଜ | - | ଇଞ୍ଜଏତ ଆନାଞ୍ଜ ଅକାପେ ସେନତାନା । |
| ମୁଁ ଜାଣିଛି | - | ମୁଁ ଜାଣିଛି ତୁମେ କୁଆଡେ ଯାଉଛ । |
| ଏସେଦ୍ | - | ଇଞ୍ଜକେ ଆଲମ୍ ଏସେଦ୍ ବାଲାଞ୍ଜା । |
| ଅଟକାଇବା | - | ମୋତେ ଅଟକାଅ ନାହିଁ । |
| ଏଣେଁ | – | କାଟାରେଞ୍ଜ ଏଣେଁୟାକାନା । |
| ଘା | - | ଗୋଡରେ ଘା ହୋଇଛି । |
| ଏଗ | – | ଏଗ ଅକାମ୍ ସେନଜାନା । |
| ସମ୍ବୋଧନ | - | ଆହେ କୁଆଡେ ଗଲ । |
| ଏଟ୍‌କେ-ଟଣେ | – | ବିଜାଞ୍ଜ ଏଟକଏଟଣେରେଞ୍ଜ ଉୟୁଃଜାନା । |
| ସମସ୍ୟା | - | ବହୁତ ସମସ୍ୟାରେ ପଡିଗଲି । |

## କ

| | | |
|---|---|---|
| କଳା | - | କୁଳି କଳା ଜତ ସମାନ ଅଧିକାର । |
| ପୁରୁଷ | - | ସ୍ତ୍ରୀ ପୁରୁଷ ସମସ୍ତଙ୍କର ସମାନ ଅଧିକାର । |

| | | |
|---|---|---|
| କକର | - | କକରାଃ ମେଦ୍ ଦ ମାରାଂ ମାରାଂଆ । |
| ପେଚା | - | ପେଚା ର ଅଖି ବଡ ବଡ । |
| କଆଃ | - | କଆଃ ଏଜ୍ ରାଃ କେଆ । |
| କୁଆ | - | କୁଆ ରାବିଲା । |
| କାଟା | - | ମେରମାଃ ଉପୁନିଆ କାଟା ମେନାଃଆ । |
| ଗୋଡ | - | ଛେଳିର ଚାରିଟା ଗୋଡ ଅଛି । |
| କାକ୍ଲା | - | କାକ୍ଲା ରଂଏଜ୍ ବଦ୍‌ଲେୟା । |
| ଏଣ୍ଡୁଅ | - | ଏଣ୍ଡୁଅ ରଙ୍ଗ ବଦଳାଏ । |
| କାଲ୍‌ଗି | – | ସେକାମ ତେ କାଲିଗି କ ବାଜ୍ଆ । |
| ଖୋଲି | - | ପତ୍ରରେ ଖଲି ତିଆରି ହୁଏ । |
| କିଲି | - | ଆପେୟା ଚିକାନ୍ କିଲି । |
| ଗୋତ୍ର | – | ତମର ଗୋତ୍ର କଣ ? |
| କିରିଞ୍ଜ୍ | - | ହାଟ୍ ଆତେ ଉତୁ ଚାକଣା କ କିରିଞ୍ଜ୍ ଆଗୁଜ୍ଏ । |
| କିଣିବା | – | ହାଟରୁ ପରିବାପତ୍ର କିଣି ଆଣ । |
| କୁଳାମ୍ | – | ବରତେ କୁଳାମ୍ ଥର ଥରାଓ ଯାନା । |
| ଛାତି | – | ଭୟରେ ଛାତି ଥରିଲା । |
| କୁପୁଲ | - | ଝାର୍‌ଖଣ୍ଡାତେ କୁପୁଲ କ ହିଜ୍ ଆକାନାକ |
| ବନ୍ଧୁ | – | ଝାରଖଣ୍ଡରୁ ବନ୍ଧୁ ଆସିଛନ୍ତି । |
| କୁଇଲି | – | ସେକାମ୍ ଗାଜାଳରେ କୁଇଲି କୁହୁ କୁହୁଜ୍ ରାଃତାଦ୍ଆ । |
| କୋଇଲି | - | ପତ୍ର ଗହଳରେ କୋଇଲି କୁହୁ କୁହୁ ଗାଉଛି । |

# ଗ

| | | |
|---|---|---|
| ଗନେଲ୍ | - | ଗନେଲ୍ କ ଲେଖାଜ୍ ପେ । |
| ସଂଖ୍ୟା | - | ସଂଖ୍ୟା ଗୁଡିକ ଗଣ । |
| ଗନମ୍ | - | ନେ ହାଳିୟା-ହାଃ ଚିମୁଃ ଗନମ୍ । |
| ଦାମ୍ | - | ଏଇ ବଳଦଟିର ଦାମ୍ କେତେ ? |
| ଗସ | - | ଗାମା କା ତେ ଦାରୁକ ଗସ ଜାନା । |
| ଝାଉଁଳିବା | - | ବର୍ଷା ବିନା ଗଛ ସବୁ ଝାଉଁଳି ଗଲା । |

| | | |
|---|---|---|
| ଗଦ୍ | - | ବଙ୍ଗା ଲାଗେଦ୍ ବାହାବୁ ଗଦେୟା । |
| ତୋଳିବା | - | ପୂଜା ପାଇଁ ଫୁଲ ତୋଳିବା । |
| ଗଣ୍ | - | ଚିଆ ରେୟାଃ ଏମ୍ ଗଁଣାକାଜିଞା । |
| ପଛରେ | - | କ'ଣ ପାଇଁ ମୋ ପଛରେ ଆସୁଛ । |
| ଗାମା | - | ତିସିଞ୍ଜ ମଦ ଆଛ୍‌ଲାଜ୍ ଗାମା କେଆଃ । |
| ବର୍ଷା | - | ଆଜି ଅସରାଏ ବର୍ଷା ହେଲା । |
| ଗାପା | - | ଗାପା ମାମୁଁ ଅଲାଃ ଲାଂ ସେନଃଆ । |
| ଆସନ୍ତା କାଲି | - | ଆସନ୍ତା କାଲି ମାମୁ ଘରକୁ ଯିବା । |
| ଗତାଃ | - | ଦେୟା ଗତାଃ ତାଞ୍ଜେ । |
| କୁଣ୍ଡେଇବା | - | ପିଠି କୁଣ୍ଡେଇ ଦିଅ । |
| ଗୁରିଜ | - | ଗୁରିଜ ଖତ୍ ଅମ୍ ଲେରେ ବାବା ବେଶ ହୁୟୁଃଆ । |
| ଗୋବର | - | ଗୋବରଖତ ଦେଲେ ଧାନ ଭଲ ହୁଏ । |
| ଗୁପି | - | ମେରମ୍ ଗୁପିଞ୍ଜ ସେନ୍ ଲେନା । |
| ଚରାଇବା | - | ଛେଳି ଚରାଇବାକୁ ଯାଇଥିଲି । |
| ଗୁମାଣ | - | ଗୁମାଣ ତେଞ୍ଜ ଲୁମ୍ ଚାବାଯାନା । |
| ଝାଳ ବୋହିବା | - | ଝାଳରେ ଭିଜିଗଲି । |
| ଗେଲେ | - | ଆଲେୟାଃ ଗେଲେୟା ଗାଈ ମେନାଃ କଆ । |
| ଦଶ | - | ଆମର ଦଶଟି ଗାଈ ଅଛନ୍ତି । |
| ଗେଲେ | - | ବାବାକ ଗେଲେ ଉଙ୍କୁଲ୍ ଯାନା । |
| ଧାନ ଫୁଟିବା | - | ଧାନ ଫୁଟିବା ଆରମ୍ଭ ହେଲା । |

## ଚ

| | | |
|---|---|---|
| ଚକେ | - | ଗାଡୁରେ ଚକେ ମେନାଃ କଆ । |
| ବେଙ୍ଗ | - | ଗଡିଆରେ ବେଙ୍ଗ ଅଛନ୍ତି । |
| ଚପଜ୍ | - | ନେ ହାଲା ତେଦ୍ ଚପଜ୍ କାତେ ଜମେମେ । |
| ଚୁଷିବା | - | ଏହି ଔଷଧଟି ଚୁଷି ଖାଆନ୍ତୁ । |
| ଚାଜ୍‌ଲମ୍ | - | ହାଣ୍ଡୁ ଚାଜ୍‌ଲମ୍ ଜିଲିଜ୍ ଗେୟା । |
| ଲାଙ୍ଗୁଡ | - | ମାଙ୍କଡ ଲାଙ୍ଗୁଡଟି ଲମ୍ୱା । |
| ଚାଟୁ | - | ଚାଟୁରେ ରେଆଳ ଦାଃ ଜଗାଏମେ । |
| ହାଣ୍ଡି | - | ହାଣ୍ଡିରେ ଥଣ୍ଡାପାଣି ରଖ । |

ଚାଣ୍ଡୁବ୍ - ପୁନୁଁଇରେ ଚାଣ୍ଡୁବ ଗୁଲାଇ ଗେଜ୍ ନେଲଃଆ ।
ଜହ୍ନଁ - ପୂର୍ଣ୍ଣିମାରେ ଜହ୍ନଁ ଗୋଲ ଦେଖାଯାଏ ।
ଚାପୁଦ - ନେ କାଲମବାବା ବିଜାଞ୍ଜି ଚାପୁଦ ଜାନା ।
ଅଗାଡ଼ି - ଏ ବର୍ଷ ଧାନ ବହୁତ ଅଗାଡ଼ି ହେଲା ।
ଚିମିନ୍ - ଚିମିନ ସାଙ୍ଗିଞ୍ଜ୍ ସେନଲେନାମ୍ ।
କେତେ - କେତେ ଦୂର ଯାଇଥିଲ ।
ଚିପୁଦ - ଚାଉଲି ମଦ୍ ଚିପୁଦ ଅମାଞ୍ଜେ ।
ମୁଠା - ଚାଉଳ ମୁଠାଏ ଦିଅ ।
ଚିମତାଃ - ଚିମତାଃ ଏମ୍ ହିଜ୍ ଲେନା ।
କେବେ - କେବେ ଆସିଥିଲ ।
ଚିୟା - ଚିୟାମ ପାଇଟି ତାନା ।
କ'ଣ - କ'ଣ କାମ କରୁଛ ।
ଚେଣେ - ଚେଣେ ଜିଜ୍ ଆପିର୍ ଯାନା ।
ଚଢେଇ - ଚଢେଇଟି ଉଡିଗଲା ।
ଚେହେଁରା - କୁଳିହନେ ଜିଜ୍ ବିଜାଞ୍ଜି ଚେହେଁରାଜ୍ ନେଲଃତାନା ।
ସୁନ୍ଦର - ଝିଅଟି ବହୁତ ସୁନ୍ଦର ଦେଖା ଯାଉଛି ।

## ଜ

ଜଜ - ଜଜ ଦକ ଆଚାରେୟା ।
ତେନ୍ତୁଳି - ତେନ୍ତୁଳି ଆଚାର କରାଯାଏ ।
ଜଲ୍ - ଜଲ୍ ପାୟରା କିନ୍ ଆପିର ଯାନା ।
ଯୋଡି - ପାରା ଯୋଡିକ ଉଡିଗଲେ ।
ଜଅ - ନେ କାଲମ ବିଜାଞ୍ଜି ଉଲି ଜଅ ଆକାନା ।
ଫଳ - ଏ ବର୍ଷ ବହୁତ ଆମ୍ବ ଫଳିଛି ।
ଜମ - ଚିଆମ ଜମେୟା ?
ଖାଇବା - କ'ଣ ଖାଇବ ?
ଜଃ - ଅଳାଃ କ ଜଃ ସାଫାତାପେ ।
ଝାଡୁମାରିବା - ଘର ଗୁଡା ଝାଡୁମାରି ସଫା କରି ଦିଅ ।
ଜନଃ - ଜନଃ ତେଜ୍ ଆଗୁଜ୍ଏ ।
ଛାଞ୍ଚୁଣୀ - ଛାଞ୍ଚୁଣୀଟା ଆଣ ।

ଜତ - ଜତ ଲେକାନ୍ ଦାରୁ ମେନାଃଆ ।
ସମସ୍ତ - ସମସ୍ତ ପ୍ରକାର ଗଛ ଅଛି ।
ଜତନ - ଦାରୁ ରଓ୍ୱା କାତେ ବୁନ୍ ଜତନେୟା
ଜତ୍ନ - ଗଛ ଲଗାଇ ଯତ୍ନ କରିବା ।
ଜଗାଓ - ବାକ୍ସାତେଦ୍ ଜଗାଓ ତାମ ।
ରଖିବା - ବାକ୍ସଟିକୁ ରଖିଦିଅ ।
ଜାନୁମ - ଅଲାଃ ସୁବାରେୟାଃ ଜାନୁମ ଦାରୁ ମାଃତାପେ ।
କଣ୍ଟା - ଘର ପାଖର କଣ୍ଟା ଗଛକୁ କାଟିଦିଅ ।
ଜାପିଦ - ବିଜାଞ୍ଜି ନିଦା ଜାନା ଜାପିଦ୍ କେଆଃକ ।
ନିଦେଇବା – ବହୁତ ରାତି ହେଲା ନିଦରେ ଶୋଇ ଗଲେ ।

## ଟ

ଟଲମଲ - ଜୀବନ ଟଲମଲ ତାନା ।
ଟଲମଲ - ନଦୀବନ୍ଧଟା ଟଲମଲ ହେଉଛି ।
ଟଣ୍ଡମ – ନାମା ହୁଲୁକ ଟଣ୍ଡମ ତାମ୍ ।
ଗଣ୍ଠିଲି - ନୂଆ ଲୁଗା ଗୁଡାକୁ ଗଣ୍ଠିଲିରେ ବାନ୍ଧିଦିଅ ।
ଟପ୍ – ଶିଶିତେଦ ଟପ ଲାଗାଓ ତାମ ।
ଠିପି - ଶିଶିରେ ଠିପି ଲଗେଇଦିଅ ।
ଟାଣ୍ଟ - ହେଲେମ ଜିନିଷରେ ଟାଣ୍ଟକ ଲଟେନା ।
ଜନ୍ଦା - ମିଠା ଜିନିଷରେ ଜନ୍ଦା ଲାଗନ୍ତି ।
ଟାକା - ଟାକା ପୁଇସା ଜତହଲଓ୍ୱାଃ ଦରକାର ।
ଟଙ୍କା - ଟଙ୍କା ପଇସା ସମସ୍ତଙ୍କର ଦରକାର ।
ଟାଣ୍ଡି - ଅଲାଃ ସୁବାରେୟାଃ ଲାଟା ବୁଦାକ ମାଃ ଟାଣ୍ଡି ତାମ୍ ।
ସଫା କରିବା - ଘର ଚାରି ପାଖର ଲଟା ବୁଦାକୁ କାଟି ସଫା କରି ଦିଅ ।
ଟୁକୁବ୍ - ବୁଡା ଜିଜ୍ ଟୁକୁବ୍ ଟୁକୁବ୍ ତେଜ ସେନତାଦ୍ଆ ।
ସାହାରା ବାଡି - ବୁଢାଟି ସାହାରା ବାଡି ଧରି ଚାଲୁଛି ।
ଟେସା - କପାଟ ତେଦ୍ ଟେସାତାମ ।
ଠେସା - କବାଟରେ ଠେସା ଲଗେଇଦିଅ ।
ଟେଣ୍ଡେର - ଆରସି ତେଦ୍ ଟେଣ୍ଡେର ତାମ୍ ।
ଡେରେଇବା - ଆଇନାଟି ଡେରେଇ ଦିଅ ।

## ଡ

| | | |
|---|---|---|
| ଡଗର | - | ଆଦ୍ ହାଳିୟାଃ ଅକରେ ଡଗରେମ୍ ନାମ୍ କେଆଃ । |
| ସନ୍ଧାନ | - | ହଜିଲା ବଳଦର କେଁଉଠି ସନ୍ଧାନ ପାଇଲ ? |
| ଡଙ୍କଲ | - | ଦାଃରେ ଶଲ ଡଙ୍କଲଃଆ । |
| ଭାସିବା | - | ପାଣୀରେ ଶୋଲ ଭାସେ । |
| ଡବଃ | - | କାକ୍‌ଲାଜ୍ ଡବଃ ତାଦ୍‌ଆ । |
| ମୁଣ୍ଡ ହଲାଇବା | - | ଏଣ୍ଡୁଅଟି ମୁଣ୍ଡ ହଲାଉଛି । |
| ଡାଣ୍ଡିଆ | - | ଆବେନାଃ ଆଣାଦିରେ ଅକୟ ଡାଣ୍ଡିଆ ଲେନା । |
| ମଧ୍ୟସ୍ଥି | - | ତୁମ୍ ବାହାଘରରେ କିଏ ମଧ୍ୟସ୍ଥି ଥିଲେ । |
| ଡାଣ୍ଡେ | - | ଦୋଷି ହଳକକେ କ ଡାଣ୍ଡେ କଓ୍ୱା । |
| ଜୋରିମାନା | - | ଦୋଷୀ ମାନଙ୍କୁ ଜୋରିମାନା କରାଯାଏ । |
| ଡାଟା | - | ହନେଜି ଜାଃ ବାରିୟା ଡାଟା ଅମନ୍ ଆକାନା । |
| ଦାନ୍ତ | - | ଛୁଆଟିର ଦୁଇଟି ଦାନ୍ତ ଉଠିଛି । |
| ଡାଣ୍ଡାଃ | - | ବୁଡା ହଳଜିଜ୍ ଡାଣ୍ଡାଃ ସାବ୍ କାତେଜ୍ ସେନତାଦ୍‌ଆ । |
| ବାଡି | - | ବୁଢା ଲୋକଟି ବାଡି ଧରି ଚାଲୁଛି । |
| ଡୁକୁ | - | ମଦ୍ ଡୁକୁ ଦାଃ |
| ଆଣ୍ଡୁ | - | ଆଣ୍ଡୁଏ ପାଣି । |
| ଡୁଣ୍ଡୁ | — | ଡୁଣ୍ଡୁ ବିଞ୍ଜ ଜିଜ୍ ଚକେଜ୍ ଭଦ୍ ତାଦ୍ ଜିଜ୍‌ଆ । |
| ଧଣ୍ଡସାପ | - | ଧଣ୍ଡସାପଟି ବେଙ୍ଗକୁ ଗିଳୁଛି । |
| ଡାଙ୍ଗୁଆ | - | ଡାଙ୍ଗୁଆ କୁଳି ବଃରେ ସିନ୍ଦୁର କାକ ହରଃଏୟା । |
| ଅବିବାହିତା | - | ଅବିବାହିତା ଝିଅ ମଥାରେ ସିନ୍ଦୁର ଲଗାନ୍ତି ନାହିଁ । |
| ଡିହି | - | ବାର୍ ଜାୟଗାରେ ଅଳାଃ ଡିହି ମେନାଃଆ । |
| ଘରବାରି | - | ଦୁଇ ଜାଗାରେ ଘରବାରି ଅଛି । |

## ତ

| | | |
|---|---|---|
| ତନଲ୍ | - | ତନଲ୍ ପଳହାଓ ଏପେ । |
| ବହି | - | ବହି ପଢ଼ । |
| ତଓ୍ୱା | - | ତଓ୍ୱା ନୁଲେରେ ପେଳେଜ୍ ହୁୟୁଃଆ । |
| ଦୁଧ | - | ଦୁଧ ପିଇଲେ ବଳ ବଢେ । |

ତପା – ସେୟା ପଚା ଜିନିଷ୍‌କ ଅତେରେ ତପା ତାପେ ।
ପୋତିବା - ପଚା ସଢ଼ା ଜିନିଷକୁ ମାଟିରେ ପୋତି ଦିଅ ।
ତପଲ୍ - କୁଲଗିୟା ତପଲ୍ ଦ ଜନମ୍ ଜନମ୍ ।
ବନ୍ଧନ - ସ୍ୱାମୀ ସ୍ତ୍ରୀର ବନ୍ଧନ ଯୁଗେ ଯୁଗେ ଗ୍ରହଣୀୟ ।
ତରଜ୍ – ଚୁଲାରେ ତରଜ୍ ମେନାଃଆ ।
ପାଉଁଶ – ଚୁଲିରେ ପାଉଁଶ ଅଛି ।
ତାବେନ୍ - ତାବେନ୍ ଅଡଃ ଗୁଲ୍ ଜମ୍‌ଲେରେ ବେଶ ଆଦାଓ୍ୱଆ ।
ଚୁଡ଼ା - ଚୁଡ଼ା ଓ ଗୁଡ଼ ଖାଇଲେ ଭଲ ଲାଗେ ।
ତାଙ୍ଗି - ଚାଣ୍ଡେ ହିଜୁଃମେ ତାଙ୍ଗିୟାକାଦ୍ ମେୟାଁଞ୍ଜ ।
ଅପେକ୍ଷା - ଶୀଘ୍ର ଆସ, ଅପେକ୍ଷା କରିଛି ।
ତାୟ - ଇଞ୍ଜ ତିସିଞ୍ଜ ଅଳାରେଞ୍ଜ ତାୟଃଆ ।
ରହିବା - ମୁଁ ଆଜି ଘରେ ରହିବି ।
ତାୟମ - ଆମ୍ ତାୟମ ତେ ଇଞ୍ଜଏଞ୍ଜ ସେନେୟା ।
ପଛରେ - ତୁମ ପଛରେ ମୁଁ ଚାଲିବି ।
ତାକେଜ୍ - ବସ ଗାଡି ତେଦ୍ ଦାରୁରେ ତାକେଜ୍ କାତେ ରାପୁଦ୍ ଜାନା ।
ଧକ୍କା - ବସ୍‌ଟି ଗଛରେ ଧକ୍କା ହୋଇ ଭାଙ୍ଗି ଗଲା ।
ତାରାସିଙ୍ଗି - ତାରାସିଙ୍ଗିଜ୍ ଗାମା କେଆଃ ।
ଅପରାହ୍ନ - ଅପରାହ୍ନରେ ବର୍ଷା ହେଲା ।
ତାସାଦ୍ - ମୂଲିଆ ଜିଜ୍ ତାସାଦ ଏଜ୍ ଇରତାନା ।
ଘାସ - ମୂଲିଆଟି ଘାସ କାଟୁଛି ।
ତିକିନ୍ – ଅଲଃ ବାଖୁଲରେ ହନକ କେ ତିକିନ ମାଡିକ ଅମାକ ତାନା ।
ମଧ୍ୟାହ୍ନ - ସ୍କୁଲରେ ପିଲା ମାନଙ୍କୁ ମଧ୍ୟାହ୍ନ ଭୋଜନ ଦିଆଯାଉଛି ।
ତିସିଞ୍ଜ - ତିସିଞ୍ଜ ଚିଆମ୍ ଚିକାତାନା ?
ଆଜି - ଆଜି କ'ଣ କରୁଛ ।
ତିରୁବ – ବଃ ତିରୁବ୍ କାତେଜ୍ ସେନ ଜାନା ।
ମୁଣ୍ଡ ନୁଆଇବା - ମୁଣ୍ଡ ନୁଆଇ ଚାଲି ଗଲା ।
ତୁଲ୍ – ହାମ୍ବାଲ୍ ଜିନିଷ ଆଲମ୍ ତୁଲେୟା ।
ଟେକିବା – ଓଜନିଆ ଜିନିଷ ଟେକିବ ନାହିଁ ।

ତୁଲା – ଦୋକାନରେ ତୁଲା କାତେ କଆଖରିଞ୍ଜ ଏୟା ।
ନିକିତି – ଦୋକାନରେ ନିକତିରେ ଓଜନ କରି ବିକ୍ରି କରାଯାଏ ।
ତୁଳ – ତୁଳାଃ ଦେୟାରେ ଆପିୟା ଗାର ମେନାଃଆ
ଗୁଣ୍ଡୁଚି ମୁଷା – ଗୁଣ୍ଡୁଚି ମୁଷା ପିଠିରେ ତିନୋଟି ଗାର ଅଛି ।
ତୁଞ୍ଜ – ସେନ୍ଦ୍ରାକ ସିଲାପ ଜିଜ୍‌କେ ତୁଞ୍ଜ କେ ଜିଜ୍‌ଆ ।
ବିନ୍ଧିବା – ଶିକାରୀ ମାନେ ହରିଣଟିଙ୍କୁ ଶର ବିନ୍ଧିଲେ ।

## ଦ

ଦଲା – ଦଲା ବୁ ସେନଃଆ ।
ଚାଲ – ଚାଲ ଯିବା ।
ଦଘା – ଦଘାତେ ମୁୟୁଁ ଜିଜ୍ ତଲିଜ୍‌ଏ ।
ପଘା – ବାଛୁରୀଟିଙ୍କୁ ପଘାରେ ବାନ୍ଧିଦିଅ ।
ଦରେୟା – ଦରେୟା ଦାଃ ବୁଲୁଂଗେୟା ।
ସମୁଦ୍ର – ସମୁଦ୍ର ପାଣି ଲୁଣିଆ ।
ଦାପାଲ – ଦାଃ ଚାଟୁ ତେଦ୍ ଦାପାଲ ତାମ୍ ।
ଢାଙ୍କିବା – ପାଣି ହାଣ୍ଡିଟିଙ୍କୁ ଢାଙ୍କି ଦିଅ ।
ଦାନାଂ – ଦାରୁ ଦାନାଂ ଆତେଜ୍ ନେଲକେନା ।
ଉହାଡ – ବାଘଟି ଗଛ ଉହାଡରୁ ଦେଖୁଥିଲା ।
ଦାରମ – କୁପୁଲ କ ବୁ ଦାରମ୍ କଓ୍ୱା ।
ସ୍ୱାଗତ – ଅତିଥିଙ୍କୁ ସ୍ୱାଗତ କରିବା ।
ଦାରୁ – ଜ ଦାରୁବୁ ରଓ୍ୱାଜ୍‌ଆ ।
ଗଛ – ଫଳ ଗଛ ଲଗାଇବା ।
ଦିରି – କୋଣାର୍କ ମନ୍ଦିର ଦ ଦିରିତେ ବାଇୟାକାନା ।
ପଥର – କୋଣାର୍କ ମନ୍ଦିରଟି ପଥରରେ ତିଆରି ହୋଇଛି ।
ଦିପିଲ – କୁଳି ଜିଜ୍ ଦାଃ କାଳସା ଦିପିଲ କାତେଜ ହିଜ୍‌ତାନା ।
ମୁଣ୍ଡେଇବା – ସ୍ତ୍ରୀ ଲୋକଟି ପାଣି କଳସ ମୁଣ୍ଡେଇଛି ।
ଦିଶୁମ – ଆବୁ ଦିଶୁମ ରେୟାଃ ନୁମୁ ଭାରତ ।
ଦେଶ – ଆମ ଦେଶର ନାମ ଭାରତ ।
ଦୁମୁର – ଦୁମୁର ରାସେ ହେଲେମ୍ ଗେୟା ।
ମହୁ – ମହୁରସ ମିଠା ଲାଗେ ।

# ନ

| | | |
|---|---|---|
| ନନଲ୍ | - | ନନଲ୍ ତେକ ଅଲେୟା । |
| କଲମ | - | କଲମରେ ଲେଖା ଯାଏ । |
| ନିଜେମ | – | କପାଟ ତେଦ ନିଜେମେ । |
| ଖୋଲିବା | – | କବାଟ ଟା ଖୋଲିଦିଅ । |
| ନଲାଦ୍ | - | ନଲାଦ ଚାଟୁତେଦ୍ ହୁରାଂ ତାପେ । |
| କାଳିଆ | – | କାଳିଆ ହଣ୍ଡିଟି ପିଙ୍ଗି ଦିଅ । |
| ନାମ | – | ବୁରୁଆତେ ହାଲାମ ନାମ ଆଉକେଆ । |
| ଖୋଜିବା | – | ଜଙ୍ଗଲରୁ ଔଷଧ ଖୋଜି ଆଣ । |
| ନାମା | – | ବଙ୍ଗା ବୁରୁ ଦୁଲାଃ ନାମା ହୁଲୁ ହରଃଏମେ । |
| ନୂଆ | - | ପୂଜାପାଠ ଦିନ ନୂଆ ଲୁଗା ପିନ୍ଧନ୍ତି । |
| ନାଲା | - | ପାଇଟି ଲେରେ ନାଲା ନାମଃଆ । |
| ମଜୁରୀ | – | କାମ କଲେ ମଜୁରୀ ମିଳେ । |
| ନାପାମ୍ | – | ଇଞ୍ଜ କେ ସେତାଃରେ ନାପାମ୍ ଇଞ୍ଜାଏଁ । |
| ସାକ୍ଷାତ | – | ମୋତେ ସକାଳେ ସାକ୍ଷାତ କର । |
| ନାଆଲ | - | ନାଲତେକ ସିଜ୍ଆ । |
| ଲଙ୍ଗଳ | – | ଲଙ୍ଗଳରେ ଚଷା ଯାଏ । |
| ନାଜତେ | - | ଆମାଃ କାଜି ନାଜ୍ତେ ଯାନା । |
| ସତରେ | – | ତୁମ କଥାଟି ସତ ହେଲା । |
| ନିର | – | ହନକ ଗୋଡା ରେକ ନିରକେଆଃ । |
| ଦୌଡିବା | - | ପିଲାମାନେ ପଡିଆରେ ଦୌଡିଲେ । |

# ପ

| | | |
|---|---|---|
| ପୟଲା | - | ପୟଲା ତେ  ବାବାକ ସଂଏୟା । |
| ମାଣ | - | ମାଣରେ ଧାନ ମପାଯାଏ । |
| ପରବ | - | ପରବରେ ନାମା ହୁଲୁକ ହରଃଏୟା । |
| ପର୍ବ | - | ପର୍ବରେ ନୂଆ ଲୁଗା ପିନ୍ଧନ୍ତି । |
| ପାରକମ୍ | - | ପାରକମ୍ରେକ ଗିତିଜ୍ଆ । |
| ଖଟ | - | ଖଟରେ ଶୁଅନ୍ତି । |

| | | |
|---|---|---|
| ପାୟରା | - | ଆଲେ ଅଲାଃରେ ଜତା ପାୟରା ମେନାଃକଆ । |
| ପାରା | - | ଆମଘରେ ଲୋଟଣିପାରା ଅଛନ୍ତି । |
| ପାଶେ | - | ହଲଜିଜ ପାଶେ କୁଷ୍ଠାରେକ ହାକା କିଜିଜ୍ଆ । |
| ଫାଶି | - | ଲୋକଟିକୁ ଫାଶି ଖୁଣ୍ଟରେ ଝୁଲାଇ ଦେଲେ । |
| ପାସିର | - | ଗାମାଦିନ କାଦମ ଦାଃ ପାସିରଃଆ । |
| ଛିଟିକିବା | - | ବର୍ଷାଦିନେ କାଦୁଅ ପାଣି ଛିଟିକି ପଡେ । |
| ପାରମ | - | ଡଙ୍ଗାରେ ଦୁବ୍ କାତେ ଗାଡାଲେ ପାରମ୍ ଜାନା । |
| ପାରେଇଯିବା | - | ଡଙ୍ଗାରେ ବସି ନଦୀ ପାର ହେଲୁ । |
| ପାଣ୍ଡୁ | - | ବୁଡା ଜାନ୍‌ରେ ଭବ୍ ପାଣ୍ଡୁଅଆଃ । |
| ଚୁଟି ପାଚିବା | - | ବୁଢା ହେଲେ ଚୁଟି ପାଚିଯାଏ । |
| ପାଟୁବ୍ | - | ହୟତେ ଦାରୁ ପାଟୁବ୍ ଜାନା । |
| ଉପୁଡିଯିବା | - | ପବନରେ ଗଛଟି ଉପୁଡିଗଲା । |
| ପିଠାଲୁ | – | ସିମ୍ ଏଙ୍ଗାଜ୍ ପିଠାଲୁ କେଆଃ । |
| ଅଣ୍ଡା | - | ମାଇ କୁକୁଡାଟି ଅଣ୍ଡା ଦେଲା । |
| ପିଣ୍‌ଗି | - | ପିଣଗିରେ ହଲକ ଦୁବ୍ ଆକାନା । |
| ପିଣ୍ଡା | - | ପିଣ୍ଡାରେ ଲୋକମାନେ ବସିଛନ୍ତି । |
| ପୁଲୁଃ | - | ସେକାମ୍ ତେ ପୁଲୁଃ କ ବାଜ୍ଆ । |
| ଚଉତି | - | ପତ୍ରରେ ଚଉତି ତିଆରି କରନ୍ତି । |
| ପୁତାମ୍ | - | ଦାରୁ ଚେତାନ୍‌ରେ ପୁତାମ୍ ଏଜ୍ ରାଃତାନା । |
| କପୋତ | - | ଗଛ ଉପରେ କପୋତଟି ରାବୁଛି । |
| ପୁନୁଇ | - | ପୁନୁଇ ନିଦା ସିର୍ମା ଫୁରଚା ନେଲଃଆ । |
| ପୂର୍ଣ୍ଣିମା | - | ପୂର୍ଣ୍ଣିମା ରାତିରେ ଆକାଶ ନିର୍ମଳ ଦେଖାଯାଏ । |
| ପୁନ୍‌କି | - | ପୁନକି ତେ ଜିଲୁକ ଗେଦେୟା । |
| ପନକି | - | ପନକିରେ ମାଂସ କଟାଯାଏ । |
| ପେରେଜ୍ | - | କାଲସାରେ ଦାଃ ପେରେଜ ଆକାନା । |
| ଭର୍ତ୍ତି | - | କଳସରେ ପାଣି ଭର୍ତ୍ତି ହୋଇଛି । |
| ପେଲେଜ | - | ତଓ୍ୱା ନୁ ଲେରେ ପେଲେଜ ଆଦା ଆଃ । |
| ଶକ୍ତି | - | କ୍ଷୀର ପିଇଲେ ଶକ୍ତି ବଢେ । |

## ବ

| | | |
|---|---|---|
| ବଗ୍ଲାଃ | – | ବଗ୍ଲାଃକ ଆତିଞ୍ଚ ତାନା । |
| ବଗ | – | ବଗ ଚରୁଛନ୍ତି । |
| ବଟମ୍ | – | ହାତୁ ମୁଡିରେ ବଟମ୍ ଦାରୁ ମେନାଃଆ । |
| ବର | – | ଗାଁ ମୁଣ୍ଡରେ ବର ଗଛ ଅଛି । |
| ବକମ | – | ବକମ୍ ଦାରୁତେ ଜଗନ୍ନାଥ ବଙ୍ଗାକ ବାଇକଓ୍ୱା । |
| ମହାନିମ୍ବ | - | ମହାନିମ୍ବ ବୃକ୍ଷରେ ଜଗନ୍ନାଥ ମୂ[illegible] କରନ୍ତି । |
| ବଗଲ ବଗଲ | – | ମାଡି ବଗଲ ବଗଲ ହଣ୍ଡେଜ୍ ତାନା । |
| ଭାତ ଫୁଟିବା | – | ଭାତ ଫୁଟୁଛି । |
| ବଂଗା | – | ପୁରୀରେ ଯତ ବଙ୍ଗା ମେନାଃ କଓ୍ୱା |
| ଦେବା ଦେବୀ | - | ପୁରୀରେ ସମସ୍ତ ଦେବା ଦେବୀ ଅଛନ୍ତି । |
| ବାକ୍ରା | – | ଆଲେୟାଃ ବାଲଗିରେ ବାକ୍ରା ଦାରୁ ମେନାଃଆ । |
| ବରକୋଳି | - | ଆମ ବାଡିରେ ବରକୋଳି ଗଛ ଅଛି । |
| ବାଜ୍ଚମ | – | ବାଜ୍ଚମ୍ତେ ପାରକମ୍ ବାୟାରକ ଉଣ୍ଡୋଆ |
| ସବାଇ ଘାସ | - | ସବାଇ ଘାସରେ ଖଟ ଦଉଡି ତିଆରି ହୁଏ । |
| ବାନଃଆ | – | ଦାରୁରେ ଜ ବାନଃଆ । |
| ନାହିଁ | - | ଗଛରେ ଫଳ ନାହିଁ । |
| ବସଃ | – | କାଟା ବସଃ ତାଞ୍ଚମେ । |
| ଘସିବା | - | ଗୋଡ ଘସି ଦିଅ । |
| ବାନା | – | ବାନାହାଃ ଜିଲିଜ ସାର୍ ସାର୍ ମେନାଃଆ । |
| ଭାଲୁ | - | ଭାଲୁର ଲମ୍ବାନଖ ଅଛି । |
| ବାରତି | – | ବାରତି ତେଜ୍ ହାଁବୁଦ୍ କିଜିଜ୍ଆ |
| ଦୁଇହାତ | - | ଦୁଇ ହାତରେ ଜାବୁଡିଧରିଲା । |
| ବାତି | – | ଯୁନା ବାତି ଜୁଣ୍ଡିଜ୍ଏଁ। |
| ଆଲୁଅ | - | ସନ୍ଧ୍ୟାହେଲା ଆଲୁଅ ଜାଳିଦିଅ । |
| ବାକଃ | – | ଚେତାନରେ ଜ ମେନାଃଆ ବାକଃ ଉୟୁଏମ । |
| ଆଂଶୀ /ଆଙ୍କୁଡ | - | ଉପରେ ଫଳ ଅଛି ଆଂଶୀ ଲଗାଇ ତୋଳିଆଣ । |
| ବାଦାମ | - | ବାଦାମ ଆତା ଜମ୍ ବେଡେ ମଜା । |
| ବାଦାମ | - | ବାଦାମ ଭଜା ଖାଇବାକୁ ମଜା । |

| | | |
|---|---|---|
| ବାଜାର | – | ବାଜରାତେ ହୁଲୁଟିଆଂକ କିରିଞ୍ଜେପେ । |
| ବଜାର | – | ବଜାରରୁ ଲୁଗାପଟା କିଣି ଆଣ । |
| ବାକ୍ଲା | – | ନେଣାଂ ହଳଦ ବାକ୍ଲା କ ହରଃ ଲେନା । |
| ବଲ୍କଳ | - | ପୂର୍ବକାଳରେ ଲୋକମାନେ ବଳକଳ ପିନ୍ଧୁ ଥିଲେ । |
| ବାଗ୍ଲା | – | ବାଗ୍ଲା ଚାଉଲି ଦ ବାଗ୍ଲା ଗେ ମାଡିହଆ । |
| ବଗଲା /ବଗଡ଼ା | - | ବଗଲା / ବଗଡ଼ା ଚାଉଳରେ ବଗଡ଼ା ଭାତ ହୁଏ । |
| ବାଚ୍କାର | – | ବାଚକାର ଦ ଦୁଆର ଦୁଆର କ ହନରା । |
| ବାର ବୁଲା | - | ବାରବୁଲା ମାନେ ଦ୍ୱାର ଦ୍ୱାର ବୁଲନ୍ତି । |
| ବାସି | – | ବାସି ପାଖାଲ ଦ ଜଜ ଗେୟା । |
| ବାସି | - | ବାସି ପଖାଳ ଖଟା ଲାଗେ । |
| ବାସ | – | ସେୟା ଗେ ବାସ୍ ତାନା । |
| ଗନ୍ଧ | - | ପଚା ଦୁର୍ଗନ୍ଧ ହେଉଛି । |
| ବାହା | – | ମାଲି ବାହା ବାସ ତାନା । |
| ଫୁଲ | - | ମଲ୍ଲି ଫୁଲ ବାସ୍ନା ହେଉଛି । |
| ବାନାମ | – | ଯୁଗି ବାନାମେଜ୍ ରୁତାଦ୍ଆ । |
| କେନ୍ଦରା | - | ଯୋଗି କେନ୍ଦରା ବଜାଉଛି । |
| ବେଙ୍ଗାଳ | - | ବାଳଗି ୟାତେ ବେଙ୍ଗାଳ ଗଦ୍ ଆଗୁଜ୍ ପେ । |
| ବାଇଗଣ | - | ବାଡିରୁ ବାଇଗଣ ତୋଳି ଆଣ । |
| ବେଲୁନ | - | ବେଲୁନ୍ ତେଜ୍ ପସାଃ ଜାନା । |
| ବେଲୁନ୍ | – | ବେଲୁନଟି ଫାଟି ଗଲା । |
| ବାବୁ | – | ଆମାଃ ବାବୁ ଅକାଜ ସେନଜାନା । |
| ବାପା | - | ତୁମ ବାପା କୁଆଡେ ଗଲେ । |
| ବାଗାନ୍ | - | ଆଲେୟାଃ ବାହା ବାଗାନ୍ ମେନାଃଆ । |
| ବଗିଚା | - | ଆମର ଫୁଲ ବଗିଚା ଅଛି । |
| ବାବା | - | ବାବା ହେର ଉଙ୍କୁଳ ଜାନା । |
| ଧାନ | - | ଧାନ ବୁଣା ଆରମ୍ଭ ହେଲା । |
| ବାକୁଲ୍ | - | ଆପେ ବାକୁଲ୍ ସାଃ ହନର୍ଲେ ସେନଃ-ଆ । |
| ଘର | - | ତୁମ ଘର ଆଡେ ବୁଲି ଯିବୁ । |

| | | |
|---|---|---|
| ବାଳଗି | – | ଆପେୟାଃ ବାଳଗିରେ ସୁଇତାମ ମେନାଃଆ । |
| ବାଡି | – | ତୁମ ବାଡିରେ ପିଜୁଳି ଅଛି । |
| ବିଦଧିରି | – | ଆଲେୟାଃ କୁଲି ଦୁଆରରେ ବିଦଦିରି ମେନାଃଆ । |
| ପଥର | – | ଆମ ଘର ସାମ୍ନାରେ ପଥର ପୋତା ଯାଇଛି । |
| ବୁଗି | – | ଆଲେ ଯତ ହଳ ବୁଗିରେଗେ ମେନାଃ ଲେଆ । |
| ଭଲ | – | ଆମେ ସମସ୍ତେ ଭଲ ଅଛୁ । |
| ବୁଡା | – | ବୁଡା ହଳ ଜିଜ କୁବୁଂ କୁବୁଂ ଏଜ୍ ସେନତାଦ୍ଆ । |
| ବୁଢା | – | ବୁଢା ଲୋକଟି ନଇଁ ନଇଁ ଚାଲୁଛି । |
| ବୁଲୁଃ | – | ବୁଲୁଃ ହଳ ଦ କାକ ବୁଝ୍ଓ୍ୱଆ । |
| ମାତାଲ | – | ମାତାଲ ଲୋକ ମାନେ ବୁଝନ୍ତି ନାହିଁ । |
| ବୁଟୁଃ | – | ବାହା ବୁଟୁଃ ଆକାନା । |
| କଢି | – | ଫୁଲ କଢି ହୋଇଛି । |
| ବୁନୁମ୍ | – | ହୁଡିଞ୍ଜ ନିଦିର୍ ମାରାଂ ବୁନୁମ୍ କ ବାଇ ଦାଲିୟା । |
| ଉଇ ହୁଙ୍କା | – | ଉଇ ଛୋଟ ହେଲେ ମଧ୍ୟ ବଡ ଉଇ ହୁଙ୍କା ତିଆରି କରେ । |
| ବୁଲୁଂ | – | ଉତୁରେ ବୁଲୁଂ ଅମେମେ । |
| ଲୁଣ | – | ତରକାରୀରେ ଲୁଣ ଦିଅ । |
| ବଲ୍ | – | ବଲ୍ତେ ବାନ୍ଦିକ ବାଜ୍ଆ । |
| କୁଟା ଦଉଡି | – | କୁଟା ଦଉଡିରେ ମୁଟୁଳା ତିଆରି କରାଯାଏ । |
| ବାୟାର | – | ବାୟାର ତେଦ୍ ସିଦ୍ ଜାନା । |
| ଦଉଡି | – | ଦଉଡିଟି ଛିଣ୍ଡିଗଲା । |
| ବାରୁ | – | ବାରୁ ଜାଂ ଦକ ସୁନୁମେୟା । |
| କୁସୁମ ତେଲ | – | କୁସୁମ ମଞ୍ଜିରୁ ତେଲ କରନ୍ତି । |
| ବାରୁ ସୁନୁମ | – | ବାରୁ ସୁନୁମ ଅଜଃ ଲଃ ରେ କାଟା କା ପସାଗଆଃ । |
| କୁସୁମ ତେଲ | – | କୁସୁମ ତେଲ ମାଖିଲେ ଗୋଡ ଫାଟେ ନାହିଁ । |
| ବାଲାୟା | – | ବାଲାୟା କିନ୍ ରାଜଟ୍ ତାନା । |
| ଦୁଇ ସମୁଦି | – | ଦୁଇ ସମୁଦି କଥା ବାର୍ତ୍ତା ହେଉଛନ୍ତି । |

## ମ

| | | |
|---|---|---|
| ମଜ | – | ମଜ୍ ମେରମ୍ ଏଜ ଆଡିଞ୍ଜ ତାନା । |
| ଏକ | – | ଗୋଟିଏ ଛେଳି ଚରୁଛି । |

| | | |
|---|---|---|
| ମଗ୍ରା | – | ଦାଃ ଘାଇରେ ମଗ୍ରା ତେଦ ବସାଓ ତାମ୍ । |
| ମୁଗୁରା | - | ପାଣି ଘାଇରେ ମୁଗୁରା ବସାଇ ଦିଅ |
| ମସଦ | - | ବାହାକ ମସଦ୍ ଚାବା ଜାନା । |
| ମଉଳିବା/ଶୁଖିବା | - | ଫୁଲ ସବୁ ମଉଳି ଗଲା । |
| ମଚଂ | – | ମଚଂରେ ଡାଟା ମେନାଃଆ । |
| ପାଟି/ମୁହଁ | - | ମୁହଁରେ ଦାନ୍ତ ଅଛି । |
| ମଲଂ | – | ମଲଂରେକ ଟିକିଲିନା । |
| କପାଳ | – | କପାଳରେ ଟିକା ଲଗାନ୍ତି । |
| ମାଞ୍ଜି | - | ଇଞ୍ଜାଃ ମାଞ୍ଜି ଆକାଜ୍ ସେନଜାନା । |
| ମାଆ | - | ମୋ ମାଆ କୁଆଡେ ଗଲେ । |
| ମାଦକମ୍ | – | ମାଦ୍‌କମ୍ ଉୟୁଃ ଆକାନା । |
| ମହୁଲ | – | ମହୁଲ ପଡିଛି । |
| ମାଦଲ | – | ମାଦଲ ସାଡି ତାନା । |
| ମଦଳ | - | ମାଦଳ ଶବ୍ଦ ଶୁଭୁଛି । |
| ମାଦ | - | ମାଦ୍‌ତେ ରତୁକ ବାଜ୍ଆ । |
| ବାଉଁଶ | – | ବାଉଁଶରେ ବଇଁଶୀ ତିଆରି କରନ୍ତି । |
| ମାନାଲ | – | ବାଲଗି ସାଃରେ ମାନାଲ ଜ ଆକାନ । |
| ଝଟୁଆ / ଶିମ୍ବ | - | ବାଡି ପଟେ ଶିମ୍ବ ଫଳିଛି । |
| ମାଠା | – | ମାଠାଆଲାଃଦ ଜଜ ଗେୟା । |
| ମାଠା | - | ମାଠା ଶାଗ ଖଟା ଲାଗେ । |
| ମାରାଂ | – | ବିଜାଞ୍ଜି ମାରାଂ ହାତିଜ୍ ହିଜ୍‌ଲେନା । |
| ବଡ | - | ବହୁତ ବଡ ହାତଟିଏ ଆସିଥିଲା । |
| ମାରାଃ | – | ମାରାଃ ଏଜ୍ ସୁସୁନ୍ ତାନା । |
| ମୟୂର | - | ମୟୂର ନାଚୁଛି । |
| ମାଡ଼ି | – | ମାଡିଞ୍ଜି ଜମ୍‌ତାନା । |
| ଭାତ | - | ଭାତ ଖାଉଛି । |
| ମାଦା | – | ମାଦାତେ ବଃ କ ହାସୁତାଜିଞ୍ଜା । |
| ସର୍ଦ୍ଦି | - | ସର୍ଦ୍ଦିରେ ମୁଣ୍ଡ ବ୍ୟଥା ହେଉଛି । |

| | | |
|---|---|---|
| ମାନି | – | ମାନି ବାହା ଦ ସାସାଂଗେ ନେଲଃଆ । |
| ସୋରିଷ | - | ସୋରିଷ ଫୁଲ ହଳଦିଆ ଦେଖାଯାଏ । |
| ମାନ୍ତି | – | ଛତୁଆରେ ପରବ୍‌ଲେ ମାନ୍ତିଜ୍‌ଆ । |
| ପାଳନ | - | ପଣାସଂକ୍ରାନ୍ତିରେ ପର୍ବ ପାଳନ କରୁ । |
| ମାର୍ଚ୍ଚା | - | ପଲିଥିନ ତେଦ୍ ଜେଟେରେ ମାର୍ଚ୍ଚାଜାନା । |
| ମସୁରୀ ଯିବା | - | ପଲିଥିନଟି ଖରାରେ ମସୁରୀ ଗଲା । |
| ମାଃ | – | ବୁରୁ ଦାରୁ ଆଲପେ ମାଃ ଏୟା । |
| କାଟିବା | - | ବଣର ଗଛକୁ କାଟିବା ନାହିଁ । |
| ମାଁଜ୍ | – | ମୁର୍ଗା ଦାରୁ ଦ ମାଁଜ୍ ଗେୟୋ । |
| ମେଜ | - | ପିଆଶାଳ ଗଛ ମେଜ ହୁଏ । |
| ମେଦ୍ | – | କକର୍ ମେଦ୍ ଦ ମାରାଂ ମାରାଂଆ । |
| ଆଖି | – | ପେଚାର ଆଖି ବଡ ବଡ । |
| ମେଶା | – | ତଓ୍ୱା ଓଡଃ ଦାଃ ମେଶା ଓ୍ୱଆଃ । |
| ମିଶିବା | - | କ୍ଷୀର ଓ ପାଣି ମିଶିଯାଏ । |
| ମେରମ୍ | – | ମେରମ୍‌କ ଆତିଞ୍ଜି ତାନା । |
| ଛେଳି | - | ଛେଳି ଗୁଡିକ ଚରୁଛନ୍ତି । |
| ମେଣେଦ୍ | - | ମେଣେଦ୍ ତେ ଦାତ୍‌ରମ୍, କାତୁ କ ବାୟୁଆ । |
| ଲୁହା | - | ଲୁହାରେ ଦା, କଟୁରୀ ତିଆରି ହୁଏ । |
| ମେନାଃଆ | - | ଚୁଆରେ ଦାଃ ମେନାଆ । |
| ଅଛି | - | କୂଅରେ ପାଣି ଅଛି । |
| ମେଦେର୍ ମେଦେର୍ | – | ମେଦେର୍ ମେଦେର କ ବୁଲାକାନା । |
| ଅଳ୍ପ ନିଶା | - | ଅଳ୍ପ ଅଳ୍ପ ନିଶା ହୋଇଛି । |

## ର

| | | |
|---|---|---|
| ର | - | ଅଁଜରା ଜାଗାରେ ର କ ଦୁବଆ । |
| ମାଛି | - | ଦୂଷିତ ଜାଗାରେ ମାଛି ବସନ୍ତି । |
| ରଓ୍ୱା | - | ବାହା ଦାରୁ ବୁ ରାଓ୍ୱାଜ୍ ଆ । |
| ଲଗାଇବା | - | ଫୁଲଗଛ ଲଗାଇବା । |

ରଲ୍ - ହୁଲୁ ରଲ୍ ଜାନା ।
ଶୁଖିବା - ଲୁଗା ଶୁଖିଗଲା ।
ରାପୁଦ୍ - କାଁଚ୍ ଗିଲାସ ତେଦ୍ ରାପୁଦ୍ ଜାନା ।
ଭାଙ୍ଗିବା - କାଚ ଗ୍ଲାସଟି ଭାଙ୍ଗି ଗଲା ।
ରାବାଂ - ବୁଡା ହଲ ଜିଜ୍ ରାବାଂ ତେଜ ଥରଥରା ଓ ତାନା ।
ଶୀତ - ବୁଢା ଲୋକଟି ଶୀତରେ ଥରୁଛି ।
ରାଃ - ଆମାଃ ବାବୁ କେ ରାଃ ଆଗୁଜ୍ଏ ।
ଡାକିବା - ତୁମ ବାପାଙ୍କୁ ଡାକି ଆଣ ।
ରାଜଟ୍ - ବାଲାୟାକିନ ରାଜଟ୍ ଜାନା ।
କଥାବାର୍ତ୍ତା - ଦୁଇ ସମୁଦି  କଥାବାର୍ତ୍ତା ହେଲେ ।
ରାପାଃ - କଇଲା ତେ  ଇଟା କ ରାପାଃଏୟା ।
ପୋଡିବା - କୋଇଲାରେ ଇଟା ପୋଡାଯାଏ ।
ରାଚେ - ରାଚେରେ ଅନଲେମେ ।
ଅଗଣା - ଅଗଣାରେ ଝୋଟି ଦିଅ ।
ରାବାଲ - ତୁଲାମ, ଦ ବିଜାଞ୍ଚି ରାବାଲା ।
ହାଲୁକା - ତୁଳା ବହୁତ ହାଲୁକା ।
ରାଲେଜ - ଚା ରାଲେଜଃଆ ଚାଣ୍ଡେ ନୁଜ୍ଏ ।
ଥଣ୍ଡା ହେବା - ଚା ଥଣ୍ଡା ହେବ ଶୀଘ୍ର ପିଇଦିଅ ।
ରାସ୍କା - ତିସିଞ୍ଜୀ ଆମ ଲାଗେଦ ରାସ୍କାରେୟାଃ ଦୁଲଃା ।
ଆନନ୍ଦ - ଆଜି ତୁମ ପାଇଁ ଆନନ୍ଦର ଦିନ ।
ରିମ୍ବିଲ - ସିର୍ମାରେ ରିମ୍ବିଲ ନେଲଃ ତାନା ।
ମେଘ - ଆକାଶରେ ମେଘ ଦେଖା ଯାଉଛି ।

## ଲ

ଲାଟା – କୁନ୍ଦୁରି ଲାଟା ହାକାନା ।
ଲଟା - କୁନ୍ଦୁରି ଲଟା ମାଡ଼ିଛି ।
ଲୱା – ବାନା ଲୱା ଇସିନେଜ୍ ଜମ ତାଦ୍ଆ ।
ଡିମିରି - ଭାଲୁ ପାଚିଲା ଡିମିରି ଖାଉଛି ।

| | | |
|---|---|---|
| ଲାଦ୍ | - | ହଲଂ ତେ ଲାଦ୍ ବାୟୁଃଆ |
| ପିଠା | - | ଚୁନାରେ ପିଠା ତିଆରି ହୁଏ । |
| ଲଟେ | – | ବଟମ୍ ଖ୍ରର ହୁଲୁରେ ଲଟେ ଯାନା । |
| ଲାଗିବା | - | ବର କ୍ଷୀର ଲୁଗାରେ ଲାଗି ଗଲା । |
| ଲାମାଃ ଲାଟା | - | ଲାମାଃ ଲାଟାରେ ଶ୍ରୀ କୃଷ୍ଣ ଦୋଳି ଉନୁଃ କେନା । |
| ଶିଆଳି ଲତା | - | ଶିଆଳି ଲତାରେ ଶ୍ରୀ କୃଷ୍ଣ ଦୋଳି ଖେଳୁ ଥିଲେ । |
| ଲାଜ୍ | - | ଲାଜ୍ ହାସୁ ତାଜିଞ୍ଜା ହାଲାଞ୍ଜ ଜମେୟା । |
| ପେଟ | - | ପେଟ ବ୍ୟଥା ହେଉଛି ଔଷଧ ଖାଇବି । |
| ଲାଡୁ | – | ରାସ୍କାତେ ହନକକେ ଲାଡୁଞ୍ଜ୍ ହାଟିଞ୍ଜ୍ଆଦ୍କଓ୍ୱା । |
| ଲଡୁ | – | ଖୁସିରେ ଛୁଆ ମାନଙ୍କୁ ଲଡୁ ବାଣ୍ଟିଲି । |
| ଲଲ | – | ଲଲ ମେଣେଦ୍ ତେକ ଜେରେଦ୍ କିଜିଦ୍ଆ । |
| ତାତିଲା | – | ତାତିଲା ଲୁହାରେ ଚେଙ୍କ ଦେଲେ । |
| ଲାକ୍ତି | – | ଲାକ୍ତି ବାଳା ଟାକା ପୁଇସା ଖର୍ଚ୍ଚାଜ୍ଏ । |
| ଦରକାର | - | ଦରକାର ସମୟରେ ଟଙ୍କା ପଇସା ଖର୍ଚ୍ଚକର । |
| ଲିପି | - | ଲିପିଜିଜ ବାହାରେଜ୍ ଆବ୍ ଆକାନା । |
| ପ୍ରଜାପତି | - | ପ୍ରଜାପତଟି ଫୁଲରେ ବସିଛି । |
| ଲିମ୍ବୁଦ୍ | – | ହଳଜିଜ କେ ଲିମ୍ବୁଦ କାତେ କ ଗଜ୍କେ ଜିଆ । |
| ଗଳାରେ ଚାପିଧରିବା- | | ଲୋକଟିକୁ ଗଳାଚିପି ମାରିଦେଲେ । |
| ଲୁତୁର | - | କୁଲାଇ ଲୁତୁର ମାରାଂ ଗେୟା । |
| କାନ | - | ଠେକୁଆର କାନବଡ । |
| ଲୁମ | - | ଗାମାତେଞ୍ଜ ଲୁମ ଜାନା । |
| ଭିଜିବା | - | ବର୍ଷାରେ ଭିଜି ଗଲି । |
| ଲୁଟୁର | – | ଗାମାତେ ହାସା ଲୁଟୁରଃଆ |
| ବତୁରିବା | - | ବର୍ଷାରେ ମାଟି ବତୁରି ଯାଏ । |
| ଲୁପଃୁ | - | ଟ୍ରକରେ ଲୁପୁଃ ବସ୍ତା ଲାଦିୟାକାନା |
| କୁଣ୍ଡା | – | ଟ୍ରକ୍‌ରେ କୁଣ୍ଡା ବସ୍ତା ବୋଝେଇ ହୋଇଛି । |
| ଲୁପୁଂ | – | ଲୁପୁଂ ଗୁଣ୍ଡା ହାଳାରେ ଲାଗାଓଆଃ । |
| ବାହାଡା | – | ବାହାଡା ଚୁର୍ଣ୍ଣ ଔଷଧରେ ଲାଗେ । |

# ସ

| | | |
|---|---|---|
| ସତ୍ | – | ସତ୍ ଯୁଗରେ ସତ୍ ହଲ କ ତାୟ କେନା । |
| ସତ୍ୟ | – | ସତ୍ୟ ଯୁଗରେ ସତ୍ୟବାଦି ଲୋକ ଥିଲେ । |
| ସଙ୍ଗେତେ | – | ଆମ୍ ସଙ୍ଗେତେ ଇଞ୍ଜ ହଞ୍ଜ ସେନଃଆ । |
| ସାଥିରେ | – | ତୁମର ସାଥିରେ ମୁଁ ଯିବି । |
| ସଙ୍ଗେ ସଙ୍ଗେ | – | ସଙ୍ଗେ ସଙ୍ଗେ ପାଇଟି ଚାବା ଦରକାର । |
| ଶୀଘ୍ର ଶୀଘ୍ର | – | ଶୀଘ୍ର ଶୀଘ୍ର କାମ ସାରିବା ଉଚିତ । |
| ସନତ୍ | – | ସନତ ମନେତେ ବଙ୍ଗା ବୁରୁଜଏ । |
| ପବିତ୍ର | – | ପବିତ୍ର ସ୍ଥାନରେ ପୂଜା ପାଠ କର । |
| ସକଳ ବକଳ | – | ଝରନା ଦାଃ ସକଳ ବକଳ ହାଡିତାନା । |
| କୁଲୁ କୁଲୁ ବହିଯିବା | – | ଝରଣାଟି କୁଲୁ କୁଲୁ ନାଦରେ ବହିଯାଉଛି । |
| ସାର | – | ହଲଜିଜ୍ ଆଃ ସାରେଜ୍ ସାବଆକାଆ । |
| ତୀର | – | ଲୋକଟି ଧନୁତୀର ଧରିଛି । |
| ସାରଜମ | – | ଭୂମିଜ କ ସାରଜମ ଦାରୁ ସୁବାରେକ ବଙ୍ଗାଜ୍ଆ । |
| ଶାଳଗଛ | – | ଭୂମିଜ ମାନେ ଶାଳଗଛ ମୂଳରେ ପୂଜା କରନ୍ତି । |
| ସାରେଜ | – | ସାରେଜ୍ ଟାକାକ ବ୍ୟାଙ୍କରେ ଅମ୍ତାମ । |
| ବଳକା | – | ବଳକା ଟଙ୍କା ତକ ବ୍ୟାଙ୍କରେ ଜମାକର । |
| ସାସାଂ | – | ଝିଙ୍ଗା ବାହା ସାସାଂଗେ ନେଲଃଆ । |
| ହଳଦିଆ | – | ଜହ୍ନିଫୁଲ ହଳଦିଆ ଦେଖାଯାଏ । |
| ସାନ୍ | – | ଇସିନ ବାସାଂ ଲାଗେଦ୍ ସାନ୍ ଦରକାର । |
| କାଠ | – | ରୋଷେଇ ପାଇଁ ଜାଳେଣି କାଠ ଦରକାର । |
| ସାଦମ୍ | – | ସାଦମାଃ ଦିରିଞ୍ଜ ବାନଃଆ । |
| ଘୋଡା | – | ଘୋଡାର ଶିଙ୍ଗ ନାହିଁ । |
| ସାବ୍ | – | ପୁଖୁରୀରେ ହାଇ କ ସାବତାନା । |
| ଧରିବା | – | ପୋଖରୀରେ ମାଛ ଧରୁଛନ୍ତି । |
| ସାଡି | – | ଘୁଁ ଗୁରା ସାଡି ଆୟମ ତାନା । |
| ଶବ୍ଦ | – | ଘୁଙ୍ଗୁର ଶବ୍ଦ ଶୁଭୁଛି । |
| ସାଙ୍ଗିଞ୍ଜ | – | କଲ୍‌କାତା ବିଜାଞ୍ଜ ସାଙ୍ଗିଞ୍ଜା । |
| ଦୂର | – | କଲିକତା ବହୁତ ଦୂର । |

| | | |
|---|---|---|
| ସାମଟାଓ | – | ବାବା କ ସାମଟାଓ ତାପେ । |
| ସାଇତି ରଖିବା | - | ଧାନ ତକ ସାଇତି ରଖ । |

## ହ

| | | |
|---|---|---|
| ହର | - | ହର ଜିଜ୍ ବାଇ ବାଇତେଜ ସେନତାଦ୍ଆ । |
| କଇଁଛ | - | କଇଁଛଟି ଧିରେ ଧିରେ ଚାଲୁଛି । |
| ହରେନ | - | ହରେନ କୁଟିରେ ଦାରୁ ବୁରଓ୍ୱାଜ୍ଆ । |
| ରାସ୍ତା | - | ରାସ୍ତା କଡରେ ଗଛ ଲଗାଇବା । |
| ହୟ | - | ଝିପିର ଝିପିରଗାମା ଲଃଏଜ ହୟତାଦଆ । |
| ପବନ | - | ଝିପିଝିପି ବର୍ଷା ସହିତ ପବନ ବହୁଛି । |
| ହନର | - | ଜେଟେରେ ଆଲମ୍ ହନରା । |
| ବୁଲିବା | - | ଖରାରେ ବୁଲିବ ନାହିଁ । |
| ହଲା | - | ହଲା ଅକାମ୍ ସେନଲେନା । |
| ଗତକାଲି | - | ଗତକାଲି କୁଆଡେ ଯାଇଥିଲ । |
| ହାଲା | - | ହାଲା ଜମ୍‌ଲେରେ ହାସୁ ଚାବାଓ୍ୱଃ ଆ । |
| ଔଷଧ | - | ଔଷଧ ଖାଇଲଲେ ଜ୍ୱର ଭଲ ହୁଏ । |
| ହାର | - | କୁମ୍ଫୁଲଜିଜ୍ କେ ଅଲାଃ ଆତେକ ହାର ଉଡୁଂ କିଜିଜ୍ଆ । |
| ତଡି ଦେବା | - | ଚୋରଟିକୁ ଘରୁ ତଡି ଦେଲେ । |
| ହାତୁ | - | ହାତୁ ମୁଡିରେ ବଟମ୍ ଦାରୁ ମେନାଃଆ । |
| ଗାଁ | - | ଗାଁ ମୁଣ୍ଡରେ ବର ଗଛଟିଏ ଅଛି । |
| ହାପି | - | ହାପି ହାପି ତେକ ସେନ୍‌ଜାନା । |
| ଚୁପ୍ | - | ଚୁପ୍‌ଚାପ୍ ଚାଲିଗଲେ । |

## ସମୟ

| | | |
|---|---|---|
| ସେତାଃ | – | ସେତାଃରେ ଭରିଜକ ରାଳା ତାକମେ । |
| ସକାଳ | - | ସକାଳେ ଗୋରୁ ଗୁଡ଼ାକ ଫିଟାଇଦିଅ । |
| ବାସି ୟାମ | – | ବାସିୟାମ ମାଡିଲେ ଜମ୍ କେଆଃ । |
| ପୂର୍ବାହ୍ନ | - | ପୂର୍ବାହ୍ନରେ ଆମେ ଭାତ ଖାଇଲୁ । |
| ତିକିନ | - | ତିକିନ ଜେଟେରେ ଆଲମ ଉନୁଃଆ । |
| ଦ୍ୱିପହର | - | ଦ୍ୱିପହର ଖରାରେ ଖେଳନାହିଁ । |

| | | |
|---|---|---|
| ତାରାସିଙ୍ଗ | – | ତାରାସିଙ୍ଗି ମେରମ ଗୁପି ସେନଃମେ । |
| ଅପରାହ୍ନ | – | ଅପରାହ୍ନରେ ଛେଳି ଚରାଇବାକୁ ଯାଅ । |
| ଲଙ୍ଗା | – | ଲଙ୍ଗା ଜାନା ଉରିଜ ମେରମ କ ହାର ଆଉକପେ । |
| ଖରାପଡ଼ିଲା | – | ଖରାପଡ଼ିଲା ଗୋରୁଛେଳି ଖେଦିଆଣ । |
| ସିଙ୍ଗି ଡୁବା | – | ସିଙ୍ଗି ଡୁବାସିମ୍‌କ ବଲଯାନ । |
| ସନ୍ଧ୍ୟା | – | ସନ୍ଧ୍ୟାରେ କୁକୁଡ଼ା ପଶିଲେ ଆଣ । |
| ନିଦା | – | ନିଦା ବାଲା ଆଲମ ହନରା । |
| ରାତି | – | ରାତିରେ ବୁଲନାହିଁ। |
| ସିଙ୍ଗାଳ | – | ସିଙ୍ଗାଳ ବାଲା ସୁସୁନ୍ ଦୁରାଂ ଆକ । |
| ସନ୍ଧ୍ୟା | – | ସନ୍ଧ୍ୟାବେଳେ ନାଚଗୀତ କରନ୍ତି। |
| ନିଦା | – | ବିଜାଞ୍ଜ ନିଦା ଯାନା ଜାପିଦ୍ ଏୟାବୁ |
| ରାତି | – | ବହୁତ ରାତି ହୋଇଗଲାଣି ଶୋଇବା । |
| ତାଲା ନିଦା | – | ତାଲା ନିଦା ନିସନଃଆ । |
| ମଧ୍ୟରାତ୍ରି | – | ମଧ୍ୟରାତ୍ରିରେ ନିଃଶବ୍ଦ ହୋଇଯାଏ। |
| ମାରାଃରାଃ | – | ମାରାଃରାଃତେ ଉଟାନ ନେ । |
| ମୟୂରଡ଼ାକ | – | ମୟୂର ଡ଼ାକ ସମୟରେ ଉଠ। |
| ଇଦାଙ୍ଗ | – | ଇଦାଙ୍ଗ ତେ ମାଡିକ ଚନ୍ଦାଜ୍‌ନେ । |
| ଭୋର୍ | – | ଭୋର୍‌ରୁ ରୋଷେଇ କର । |
| ଆଂ ମେସ୍କାଲ | – | ଆଂମେସ୍କାଲ ଜାନା ଉଟାନ ପେ |
| ରାତିପାହିଲା | – | ରାତିପାହିଲାଣି ଉଠ। |
| ସିଙ୍ଗିରା କାବ | – | ସିଙ୍ଗିରା କାବ କାତେ ସେନଃ ମେ । |
| ସୂର୍ଯ୍ୟୋଦୟ | – | ସୂର୍ଯ୍ୟୋଦୟପରେ ଯାଅ। |
| ଗାପା | – | ଆମ୍ ଗାପା ଆଲେ ଅଳାଃ ହିଜୁଃମେ |
| ଆସନ୍ତାକାଲି | – | ଆସନ୍ତାକାଲି ତୁମେ ଆମ ଘରକୁ ଆସ |
| ମାୟାଂ | – | ମାୟାଂ ଆଲେ ହାତୁରେ ପରବ ହୁୟୁଃଆ । |
| ପରଦିନ | – | ପରଦିନ ଆମ ଗାଁରେ ପର୍ବ ହେବ। |
| ହଲା | – | ହଲାରେ ସୁସୁନ କକ ସେଟେରା କାନା । |
| ଗତକାଲି | – | ଗତକାଲି ନାଚଦଳ ପହଞ୍ଚିଛନ୍ତି। |

| | | |
|---|---|---|
| ହନ୍ଦେର | - | ହନ୍ଦେର ମୁସିଞ୍ଜାଲେ ବଙ୍ଗା ବୁରୁ  ଜାନା । |
| ପରଦିନ | - | ପରଦିନ ପୂଜାଅର୍ଚ୍ଚନା କଲୁ । |
| ତିସିଞ୍ଜା | - | ତିସିଞ୍ଜା ମାମୁଁ ଅଳାଃ ଏଞ୍ଜା ସେନଃଆ |
| ଆଜି | - | ଆଜି ମାମୁ ଘରକୁ ଯିବି । |
| ତିସିଞ୍ଜା ନିଦା | - | ତିସିଞ୍ଜା ନିଦା ପରବ୍ ସୁସୁନ୍ ହୁୟୁଃଆ । |
| ଆଜି ରାତି | - | ଆଜି ରାତି ପର୍ବନାଚ ହେବ । |
| ଝୁଲୁ ଫୁଲୁ | - | ଝୁଲୁ ଫୁଲତେ ସିମ୍କ ଅଲେଦ ଜାନା । |
| ଭୋର ସକାଳୁ | - | ଭୋର ସକାଳୁ କୁକୁଡ଼ା ବାହାରିଗଲେ |
| ପାର୍ତ୍ତାଂ ପୁର୍ତ୍ତୁଂ | - | ପାର୍ତ୍ତାଂ ପୁର୍ତ୍ତୁଂ ତେ ସିୟୁଏଞ୍ଜା ଇଜି କେଦ୍ କିନା । |
| ବଡ଼ି ଭୋର | - | ବଡ଼ିଭୋରରୁ ହଳ କରିବାକୁ ନେଇଗଲି । |
| ତେତେଜ୍ ନିଦା | - | ତେତେଜ ନିଦା ଇପିଲ କ ନେଲଃ ତାନା । |
| ଜ୍ୟୋତ୍ସ୍ନାରାତି | - | ଜ୍ୟୋତ୍ସ୍ନାରାତିରେ ତାରା ଦେଖାଯାଆନ୍ତି । (ଚିରକ ଦିନ) |
| ଚିରଦିନ | - | ବୁଢ଼ା ଲୋକଟି ସବୁଦିନ ପାଇଁ ଛାଡ଼ି ଚାଲିଗଲେ । |
| ଦିନ ଦିନ ଲାଗେଦ୍ | - | ହଳଜିଜ୍ ଦିନ ଦିନଲାଗେଦ ଏ ଜବାଗେ ଉଟାଦ୍ ବୁନା । |
| ମୁସିଞ୍ଜା ମୁସିଞ୍ଜା | - | ଇଞ୍ଜା ମାମୁଁ ମୁସିଞ୍ଜା କା ମୁସିଞ୍ଜାମୋ ହିଜୁଃ ଗେୟାଜ୍ । |
| ମୁଡି ଦୁଲାଃ | - | ପରବ୍ ମୁଡି ଦୁଲାଃ ଲେ ସେଟେର ଜାନା । |
| ଶେଷଦିନ | - | ପର୍ବରଶେଷଦିନରେ ପହଁଞ୍ଚିଲୁ । |
| ଗଟା ଦିନ | - | ରେଙ୍ଗେଜ୍ ତେ ଗଟାଦିନଲେ  ତାୟଜାନା । |
| ଦିନସାରା | - | ଦିନସାରା ଭୋକରେ ରହିଲୁ । |
| ଉଙ୍କୁଳ ଦୁଲାଃ | - | ଚାଣ୍ଡୁବରେୟାଃ ଉଙ୍କୁଳ ଦୁଲାଃ ପରବ୍ ହୁୟୁଃଆ । |
| ଆରମ୍ଭ ଦିନ | - | ମାସର ଆରମ୍ଭ ଦିନରେ ପର୍ବହୁଏ । |
| ଗାମା ଦିନ | - | ଗାମା ଦିନ୍ ସେଟେର ଜାନା -ବର୍ଷାଦିନ ଆସିଲା । |
| ଜେଟେ ଦିନ | - | ଜେଟେ ଦିନ ଚାବାଜାନା- ଖରାଦିନ ସରିଗଲା । |
| ରାବାଂ ଦିନ | - | ରାବାଂ ଦିନ ବାବାବୁ ଇରେୟା -ଥଣ୍ଡାଦିନ ଧାନକଟା ଯାଏ । |
| ସିଙ୍ଗିବାଲା | – | ସିଙ୍ଗିବାଲା ମେରମ୍ କ ଆତିଞ୍ଜା ତାନା -ଦିନବେଳା ଛେଳିଗୁଡିକ ଚରୁଛନ୍ତି । |
| ନିଦାବାଲା | - | ନିଦା ବାଲା ବାଦଳି କ ଆତିଞ୍ଜା -ରାତିରେ ବାଦୁଡ଼ିଗୁଡ଼ିକ ଚରନ୍ତି । |

# ପାରିବାରିକ ସମ୍ବନ୍ଧ (କିଲି କୁପୁଲ ସମ୍ପକ୍)

ମାଞ୍ଜୀ - ମାଆ
ବାବୁ - ବାପା
କାକା - କକା
ଦାଦା - ଅଜା
ହାଗା - ଭାଇ
ଝି - ପିଉସୀ
ଝି ମାମୁଁ - ପିଉସା
ପୁତୁରା - ପୁତୁରା
ଗୁଁଗୁ ବୁଡା - ବଡ଼ ବାପା
ଗୁଁଗୁ ବୁଡି - ବଡ଼ ମାଆ
ଝିଆରୀ - ଝିଆରୀ
ହିଲି - ଭାଉଜ
ଭାଇ - ବଡ଼ଭାଇ
ହମନ କୁଲି - ଝିଆରୀ
ନାନା - ଆଈ
ବକ କିମିନ - ଭାଇ ବୋହୁ
ହମନ କଲା - ପୁତୁରା
ମାମୁ - ମାମୁ
ହାତମ୍-ମାମାଁ - ମାଇଁ
ମସା - ମଉସା
ମସୀ - ମାଉସୀ
ହନ୍‌ଏରା - ଝିଅ
ହନମିଶି - ଭଉଣୀ
ହନ୍ ହାଗା - ଭାଇ
ହନହେରେଲ୍ - ପୁଅ
କିମିନ - ପୁତ୍ର ବଧୂ
ହନ୍ ଏରା ଆରା - ଝିଅ ଜ୍ୱାଇଁ
ହନ୍ ମିଶି ଆରା - ଭଉଣି ଜ୍ୱାଇଁ
ଭାଗିନି ଆରା - ଭାଣଜୀ ଜ୍ୱାଇଁ
ଭାଗିନୀ କିମିନ୍ - ଭଣଜା ବୋହୁ
ଦାଦା - ମାମୁଙ୍କର ବାପା,
ଅଜା
ନାନା - ମାମୁଙ୍କର ମାଆ,
ଆଈ

# ସାଗାଇ,ସମ୍ପର୍କ /ସମ୍ବନ୍ଧ /ସମ୍ପର୍କ

| | | |
|---|---|---|
| ବାବୁ, ଆପ | - | ପିତା, ବାପା |
| ଏଙ୍ଗା | - | ମାତା, ମାଆ |
| ଇଞ୍ଜା ହନେ | - | ମୋ, ଛୁଆ |
| ହନ୍ ହେରେଲ୍ | - | ପୁତ୍ର |
| ହନ କୁଳି | - | କନ୍ୟା |
| କିମିନ୍ | - | ପୁତ୍ର ବଧୂ |
| ହନ ଏରା | - | ଝିଅ |
| ହନ୍‌ଗାଣା | - | ଛୁଆ ପିଲା |
| ହାଗା | - | ଭାଇ |
| ହାଗାୟା | - | ଭାଇ ଭାଇ |
| ହନ ମିଶି | - | ଭଉଣୀ |
| ବକ ବାୟା | - | ଦୁଇ ଭଉଣୀ |
| ମାରାଂ ହାଗା | - | ବଡ଼ ଭାଇ |
| ହୁଡ଼ିଂ ହାଗା | - | ସାନ ଭାଇ |
| ତାଲା ହାଗା | - | ମଝିଆ ଭାଇ |
| ମିଶି | - | ବଡ଼ ଭଉଣୀ |
| ବକ କିମିନ | - | ସାନ ଭାଇର ସ୍ତ୍ରୀ |
| ହଁୟାର | - | ଦେଢ଼ଶୁର |
| ହମନ କଳା | - | ପୁତୁରା |
| ହମନ କୁଳି | - | ଝିଆରୀ |
| ହାନ୍ନାର | - | ଶାଶୁ |
| ହଁୟାର | - | ଶ୍ୱଶୁର |
| ମାମୁଁ | - | ମାମୁ |
| ହାତମ୍ | - | ମାଇଁ |
| କାକା | - | କକା |
| କାକି | - | ଖୁଡ଼ି |
| ହିରୁମ | - | ସୌତୁଣୀ |
| ହିରୁମ ଏଙ୍ଗା | - | ସୌତୁଣୀ ମା |
| କୁପୁଲ | - | ବନ୍ଧୁ |
| ଜାତାୟା | - | ଦୁଇ ଜା |
| ଗେଲେ | - | ଭଣଜା |
| ଭାଣଜି, ଗେଲେ | - | ଭାଣଜି |
| ତିଞ୍ଜା | - | ଭିଣୋଇ |
| ଝୀ | - | ପିତାଙ୍କ ଭଉଣୀ |
| ପିସା-ଝୀ ମାମୁଁ | - | ପିଉସା |
| ବାଲା | - | ସମୁଦି |
| ବାଲାକଳା | - | ସମୁଦୀ |
| ବାଲାକୁଳି | - | ସମୁଦୁଣୀ |
| ଜାଇକୁଳି | - | ନାତୁଣୀ |
| ଦା ଦା | - | ଅଜା |
| ନାନା | - | ଆଇ |
| ହିଲି | - | ଭାଉଜ |
| ଶାଳା | - | ଶଳା |
| ଶାଳି | - | ଶାଳୀ |

# ପୋଷାକ

| | | |
|---|---|---|
| ଦୋତି/ପିନ୍ଦା | - | ଧୋତି |
| ଶାଳି | - | ଶାଢ଼ି |
| ଗାମଛା | - | ଗାମୁଛା |
| ଅଙ୍ଗା, ଜାମା | - | ଜାମା |
| ଜାକିଟ | - | ଜାକିଟ୍ |
| ଗଞ୍ଜି | - | ଗଞ୍ଜି |
| ପେଣ୍ଟ (ଫାତଲୁଂ) | - | ପ୍ୟାଣ୍ଟ |
| ସାୟା | - | ସାୟା |
| ଲୁଙ୍ଗି | - | ଲୁଙ୍ଗି |
| ଦାଳି | - | ପଗଡ଼ି |
| ଉରମାଲ | - | ରୁମାଲ |
| ପାଇଜାମା | - | ପାଇଜାମା |
| ହୁଲୁଟିଆଂ | - | ପିନ୍ଧାଲୁଗା |
| ପାଚନ | - | ଛୋଟିଆ ଗାମୁଛା |
| ଚାଦର (ଉୟୁ ହୁଲୁ) | - | ଚଦର |
| ଉରଗୁମ ଜାମା | - | ଗରମ ପୋଷାକ |
| ଲୁତୁର ଦାଳି | - | ମଫ୍‌ଲାର୍ |
| ଟୁପି | - | ଟୋପି |
| ଟିଆଂ | - | ଲୁଗା |
| ଟିଆଂ ହୁଲୁ | - | ଲୁଗାପଟା |

# ଗହଣା

| | | |
|---|---|---|
| ହିସିର | - | ହାର |
| ମୁଦାମ୍ | - | ମୁଦି |
| ଚୁଳି | - | ଚୁଳି |
| ଶାଂଖା | - | ଶଙ୍ଖା |
| ଫୁଲି | - | ଫୁଲି |
| ଗାଣ୍ଡିଆ | - | ଗଣ୍ଡିଆ |
| ବାଜୁ | - | ବାଜୁ |
| ଚୁର୍ | - | ଚୁର୍ |
| ଆନ୍ଦୁ | - | ପାହୁଳ, ଖଡୁ |
| ସାକମ୍ | - | ଚୁଡ଼ି |
| ପାନକାଣ୍ଟା | - | ପାନକାଣ୍ଟା |
| ମୋହର | - | ମୋହର |
| ପଦକ | - | ପଦୁକ |
| ଲୁଲୁକ | - | ନୁଥ |
| ଖାଡୁଆ | - | ଖଡୁ |
| ପାଇଜର | - | ପାଉଁଜୀ |
| ଡାଣ୍ଡା ଗୁନସି | - | ଅଣ୍ଟାବିଛା |
| କାଟା ମୁଦାମ୍ | - | ଝୁଣ୍ଟିଆ |
| ଜୁଳା ବାହା | - | ଫୁଲକଣ୍ଟା |
| ଉବ ବାତା କିଲିପ | - | କ୍ଲିପ୍ |

## ସାତ ବାର ର ନାମ = ଏୟାଲି ଦୁଲାଃ ରେୟାଃ ନୁମୁ

| | | |
|---|---|---|
| ୧. ରବିବାର | - | ସିଂଜ ଦୁଲାଃ – (ସୂର୍ଯ୍ୟ ଦେବତାଙ୍କ) |
| ୨. ସୋମବାର | – | ବଙ୍ଗା ଦୁଲାଃ – (ଦେବା ଦେବୀଙ୍କ ଦିନ) |
| ୩. ମଙ୍ଗଳବାର | – | ଏଙ୍ଗା ଦୁଲାଃ – (ମାତା'ଙ୍କ ଦିନ) |
| ୪. ବୁଧବାର | - | ଅମନ୍ ଦୁଲାଃ – (ଅଙ୍କୁର ଦିନ) |
| ୫. ଗୁରୁବାର | - | ଗିରି ଦୁଲାଃ - (ଧନ ଦେବତାଙ୍କ ଦିନ) |
| ୬. ଶୁକ୍ରବାର | - | ସୁକ୍ ଦୁଲାଃ -(ସୁଖ ଶାନ୍ତିର ଦିନ) |
| ୭. ଶନିବାର | - | ଉକ୍ ଦୁଲାଃ - (ଶାସନର ଦିନ) |
| ପୂଜା ଦିନ | - | ବଙ୍ଗା ଦୁଲାଃ |
| ପର୍ବ ଦିନ | - | ପରବ୍ ଦୁଲାଃ |
| ଜନ୍ମ ଦିନ | - | ଜନମ୍ ଦୁଲାଃ |
| ମୃତ୍ୟୁ ଦିନ | - | ବଙ୍ଗା ଦୁଲାଃ/ଗୁଜୁଃ ଦୁଲାଃ ଗୁଜୁଃ ମୁସିଂ |
| ଆଜି | - | ତିସିଂ |
| ବର୍ତ୍ତମାନ | - | ହଆର/ନିମତୁଃ/ନୁମତୁଃ |
| ଆସନ୍ତା କାଲି | - | ଗାପା |
| ଅତୀତ | - | ପାରମ/ସେନାକାନ୍ ଦିନ |
| ଗତକାଲି | – | ହଲା |
| ଭବିଷ୍ୟତ | - | ଯାହାଁ ଦୁଲାଃ /ଆୟାରତେ/ଯାହାଁ ମୁସିଂ |
| ପରଦିନ | - | ମେୟାଂ/ମାୟାଂ |
| ଆଗାମୀ ସୋମବାର | – | ହିଜ୍‌ତାନ୍ ବଙ୍ଗାଦୁଲାଃ /ଦାରାତାନ ବଙ୍ଗାଦୁଲାଃ |
| ଗତ ସୋମବାର | – | ସେନ୍ ଜାନ ବଙ୍ଗାଦୁଲାଃ / ପାରମ ବଙ୍ଗାଦୁଲାଃ |

## ବର୍ଷ – ସିର୍ମା

| | | |
|---|---|---|
| ବର୍ଷ | – | ସିର୍ମା |
| ପୂର୍ଣ୍ଣିମା | - | ପୁନୁଇ/ପୁନାଇ |
| ଆଧା ବର୍ଷ | – | ତାଲା ସିର୍ମା/ଆଧା ସିର୍ମା |

| | | |
|---|---|---|
| ଅମାବାସ୍ୟା | - | ଅମାବାସିୟା/ଓଆଁସ |
| ଗତ ବର୍ଷ | – | ସେନ୍‌ଜାନ ସିର୍ମା |
| ଅର୍ଦ୍ଧ ଚନ୍ଦ୍ର | – | କେଚାଃ ଚାଣ୍ଡୁପ/କେଚାଃ ଚାଣ୍ଡୁବ |
| ଆସନ୍ତା ବର୍ଷ | – | ହିଜୁଃ ସିର୍ମା / କାଲମ |
| ତାରା | – | ଇପିଲ୍ |
| ବର୍ଷ ଶେଷ | – | ସିର୍ମା ମୁଡି/ବଛର୍ ମୁଁଡି/ବଛର ମୁଂଡି |
| ଶୁକ୍ଳପକ୍ଷ | - | ତେତେଜ୍ ନିଦାଂ |
| ଦୁଇ ବର୍ଷ | – | ବାର ସିର୍ମା |
| କୃଷ୍ଣପକ୍ଷ | - | ନୁବାଃ ନିଂଦା/ଲୁବାଃ ନିଂଦା |
| ପାଞ୍ଚବର୍ଷ | – | ମଣେ ସିର୍ମା |
| ଏକାଦଶୀ | - | ଏକାଦୁଶୀ |
| ମରୁଡି ବର୍ଷ | - | ଆକାଲ୍ ସିର୍ମା /ଆଟମ୍ ସିର୍ମା |

## ବାର ମାସର ନାମ – ଗେବାର ଚାଣ୍ଡୁବ ରେୟାଃ ନୁମୁ

| | | |
|---|---|---|
| ୧. ମାଘ | – | ମାଗ ଚାଣ୍ଡୁବ୍ |
| ୨. ଫଗୁଣ | – | ବାହା ଚାଣ୍ଡୁବ୍ |
| ୩. ଚୈତ୍ର | – | ଜ ଚାଣ୍ଡୁବ୍ |
| ୪. ବୈଶାଖ | – | ଜାଂ ଚାଣ୍ଡୁବ୍ |
| ୫. ଜ୍ୟେଷ୍ଠ | – | ଜେଟେ ଚାଣ୍ଡୁବ୍ |
| ୬. ଆଷାଢ | – | ଗାମା ଚାଣ୍ଡୁବ୍ |
| ୭. ଶ୍ରାବଣ | – | ଜାର୍ଗି ଚାଣ୍ଡୁବ୍ |
| ୮. ଭାଦ୍ରବ | – | ଇନ୍ଦି ଚାଣ୍ଡୁବ୍ |
| ୯. ଆଶ୍ୱିନ | - | ରେଙ୍ଗେଜ୍ ଚାଣ୍ଡୁବ୍ |
| ୧୦. କାର୍ତ୍ତିକ | - | ଶିଶିର |
| ୧୧. ମାର୍ଗଶିର | – | କାରାମ ଚାଣ୍ଡୁବ୍ |
| ୧୨. ପୌଷ | – | ରାବାଂ ଚାଣ୍ଡୁବ୍ |
| ଏହି ମାସ | – | ନେ ଚାଣ୍ଡୁବ୍ |

| | | |
|---|---|---|
| ଗତ ମାସ | – | ସେନ୍ ଜାନ ଚାଣ୍ଡୁବ୍/ପାରମ୍ ଚାଣ୍ଡୁବ |
| ଆସନ୍ତା ମାସ | - | ହିଜୁଃ ଚାଣ୍ଡୁବ୍ ହିଜୁତାନ ଚାଣ୍ଡୁବ୍ |
| ପ୍ରତି ମାସ | - | ଜତ ଚାଣ୍ଡୁବ୍/ଚାଣ୍ଡୁବ୍ ମିତିଜ୍ |
| ଆଷାଢ ମାସ | – | ଗାମା ଚାଣ୍ଡୁବ୍ |
| ଭାଦ୍ରବ ମାସ | - | ଇନ୍ଦି ଚାଣ୍ଡୁବ |

# ଛଅ ଋତୁ – ତୁରେ ଋତୁ

| | | |
|---|---|---|
| ୧. ମାଘ ଫାଲଗୁନ | - | ବାହା ରିତୁ (ରିତୁ) |
| ୨. ଚୈତ୍ର,ବୈଶାଖ | – | ଲଲ ସାଜନ୍ (ରିତୁ) |
| ୩. ଜ୍ୟେଷ୍ଠ,ଆଷାଢ | – | ଜାପୁଦ୍ ସାଜନ୍ (ରିତୁ) |
| ୪. ଶ୍ରାବଣ,ଭାଦ୍ରବ | – | ନୀରଲ୍ ସାଜନ୍ (ରିତୁ) |
| ୫. ଆଶ୍ୱିନ,କାର୍ତ୍ତିକ | – | ଇରୁଃ ସାଜନ୍ (ରିତ) |
| ୬. ମାର୍ଗଶିର,ପୌଷ | – | ହେମାଲ୍ ସାଜନ୍ (ରିତୁ) |

# ଦିଗ - ଦିଶା /ସାଃ

| | | |
|---|---|---|
| ପୂର୍ବ | – | ସିଙ୍ଗି ସାଃ ସିଙ୍ଗି ରାକାବ୍ |
| ଆକାଶ | – | ସିର୍ମା |
| ପଶ୍ଚିମ | – | ସିଙ୍ଗି ହାସୁର ସାଃ |
| ମେଘ | - | ରିମ୍ବିଲ୍/ରାହଲା |
| ଉତ୍ତର | – | ଉତାଂ ସାଃ |
| ଜଳ | - | ଦାଃ |
| ଦକ୍ଷିଣ | – | ଦାସାଂ ସାଃ |
| ବର୍ଷା | – | ଗାମା |
| ଉର୍ଦ୍ଧ | - | ସିର୍ମା ସାଃ |
| ବିଜୁଳି | – | ବିଜ୍ଲି |
| ଅଧଃ | - | ଅତେ ସାଃ |
| ବଜ୍ର | – | ବଜର୍ /ଚଲକ୍ |

